# ସପ୍ତମ ଛାନ୍ଦ

ରାଗ—କାମୋଦୀ

ଶ୍ଳୋକଃ—ସୁରଙ୍ଗକେଳିରେଷଦନୋଦସୌଧଃ
(ନାୟିକା)—ସୁଦୁର୍ଗମୋଽନ୍ତଃପୁରସୁରିଭିଶ୍ଚ,
ସଖୀଜନୈରିଙ୍ଗିତହେତୁଲକ୍ଷ୍ୟୈଃ
କଥଂ ହି ତେ ବାଞ୍ଛିତସିଦ୍ଧିରସ୍ତୁ ।

ଗୀତ—ଶୁଣ ରସିକବର        ଏ ମୋହର ଉତ୍ତର
ଏ ଚନ୍ଦ୍ରଶାଳାପୁର ପୁଣ,
ଅନ୍ତଃପୁରେ ସଞ୍ଚାରୀ        ସୁଜାର ଆଜ୍ଞାକାରୀ
ଏ ଜନ ମାନଙ୍କେ ଭୀଷଣ ହେ,
କାମୀ-ବର,
ସଖୀଜନ ଇଙ୍ଗିତ ଜ୍ଞାତା (୧)
ଏଥି କେସନେ ତୋର,        କାମନା ସିଦ୍ଧି ହେବ
ମୁଁ ହେଲେ ତୋର ପ୍ରସନ୍ନତା ହେ ।୧। (୨)

ଶ୍ଳୋକଃ—ପ୍ରସନ୍ନତାୟାଂ (୩) ତ୍ୱୟି ରାଜକନ୍ୟେ !
(ନାୟିକା)—ଭବେତ୍ ସୁସିଦ୍ଧିର୍ମମ ବାଂଛିତସ୍ୟ,
ଅଭୀଷ୍ଟଦା—କଳ୍ପଲତେବ ଭୂମି
ସୁକେଶି । ଚିନ୍ତାମଣିରେବ କାଂକ୍ଷିତମ୍ । (୩)

---

(୧)—ସଖୀଜନ ଇଙ୍ଗିତ ଜାଣ (ଖ)
(୨)—ମୁଁ ହେଲେ ତୋହରେ ପ୍ରସନ୍ନ ହେ (ଖ)
(୩) ପ୍ରସାଦତାୟାଂ (ଖ)

ଗୀତଃ—ଯେବେ ହେବୁ ପ୍ରସନ୍ନ ମୋତେ ରମାରଞ୍ଜନ
ତେବେ ଲଭିବା ସର୍ବ ସିଦ୍ଧି,
ମୋର ବାଞ୍ଛିତ କଳ୍ପ— ତରୁ ତୁ ହିଁ ଉତ୍ପାରୁ
ତୁ ମୋର ସର୍ବ ସୁଖନିଧିରେ,
ପ୍ରାଣପ୍ରିୟା !
ତୁ ଚିନ୍ତାମଣି ଅଟୁ ମୋର,
ମୁଁ ଦାସ ଜନ ମୋତେ ଏ ସ୍ନେହ ରଖିଥିବୁ
ଜାଣ ମୁଁ ତୋହରି କୋଇଁର ରେ ।୨ ।

ଶ୍ଳୋକଃ—ମୃଦୁଲ-କନକ-କାନ୍ତ୍ୟାଂ ସ୍ୱାଦୁ (୧)ସୌରଭ୍ୟରମ୍ୟାଂ
(ନାୟକ)ଃ—ବଦନକମଳମଧ୍ୟେ ନେତ୍ରମଚ୍ଛଦ୍ମିରେଫାମ୍,
ତବ କମିହ ସମୀକ୍ଷ୍ୟ ବ୍ରୀଡ଼ୟା ପଦ୍ମବୃନ୍ଦଃ
ସରସି ସଲିଲପୂର୍ଣ୍ଣେ ମଜ୍ଜିତୁକାମଃ ପ୍ରବେଷ୍ଟଃ । ୩ ।

ଗୀତଃ—ମୃଦୁକନକକାନ୍ତ ସ୍ୱାଦୁସୌରଭରମ୍ୟ
ବଦନ କମଳ ତୋହର,
ଦେଖି ସରସିରୁହ ଲଭି ଲଜ୍ଜା ସମୂହ
ହୋଇଲା ଅଧିକ କାତର ରେ,
ରମାବର !
ସଲିଳ ପୂର୍ଣ୍ଣ ସରୋବର
ମଧ୍ୟରେ ମରିବାରେ ମନେ ଏହି ବିଚାରେ
ପ୍ରବେଶେ ହୋଇଲା ତତ୍ପର ରେ । ୩ ।

---

(୧) ସ୍ନାନ (କ)

ଶ୍ଳୋକଃ—ଜ୍ୟୋତ୍ସ୍ନାବଦ୍ ଗଚ୍ଛନ୍ତୁ ବାଂଚ୍ଛିତସ୍ୟ
(ନାୟିକା)—ସିଦ୍ଧିର୍ଭବେତ କର୍ମଫଳେନ (୧) ପୁଂସଃ,
ପୁନଃପୁନର୍ବାକ୍ୟମଧୀର ଲୁବ୍ଧଃ
ଚୁଚୁମ୍ବିତଃ କଂ ଦ୍ଵିକରେଣ ଭୁଂକ୍ତେ । ୪ ।

ଗୀତଃ—ହେ ପରଦେଶିପୁଟ । ମନେ ନୁହ ଉଚାଟ
ଚନ୍ଦ୍ର ଚନ୍ଦ୍ରିକା ନଭେ ଯାଉ,
ପୂର୍ବ କର୍ମର ଫଳେ ବାଞ୍ଛା ଲଭନ୍ତି ନରେ
କ୍ଷମା ଅଧୀର ହୋଇ କହୁରେ,
କାମାତୁର,
ଏହା ବସ୍ତୁର ମନେ ଭୁହି,
ଦେଖ, ଭେଖିଲ ଜନ, ଅତ ଆତୁର ହେଲେ
ଦେନ ହସ୍ତରେ ନକ ଖାଇରେ । ୪ ।

ଶ୍ଳୋକ୍ୟ—ପ୍ରାଣାଧିକେ ! ପ୍ରିୟତମେ ! ତବରୂପ ରଜ୍ଜୁ—
(ନାୟକ)ଃ—ବଦ୍ଧୋଽସ୍ମି ସମ୍ପ୍ରତି କଥଂ ଭବନେ ବସାମି,
ସ୍ଵଜାତ୍ମଜେ । ତ୍ଵମସି ସୁନ୍ଦରି ! ନର୍ମରୂପା
ତ୍ଵତ୍ପ୍ରୀତିରମ୍ୟସୁରତୈର୍ମମ କାର୍ଯ୍ୟସିଦ୍ଧିଃ । ୫ ।

ଗୀତଃ—ଶୁଣ ଅଧିକ ତୁହି ମୋର ପ୍ରୀତି ଦାୟିନ
ତୋ ରୂପ ଗୁଣେ ବନ୍ଧା ହେଲି,
ଏବେ କେସନେ ହୋଇ ଗୃହେ ରହିବା ସହି
ମୋହରନର୍ମ ନବ ବାଳରେ,

---

(୧) ବଳେନ (ଖ)

ପ୍ରାଣପ୍ରିୟା

ତୁ ରଜକୁମାରୀ ସୁନ୍ଦରୀ,
ତୋର ପ୍ରୀତରେ ରମ୍ୟ ସୁରତ ଦାନେ ମୋର
ସକଳ କାର୍ଯ୍ୟ ସିଦ୍ଧି କାରୀରେ । ୪ ।

ଶ୍ଲୋକଃ — ଚନ୍ଦ୍ରାନନେ ! ବର୍ତ୍ତୁଳ—ତୁଙ୍ଗ—ତାଳ-(୧)
(ନାୟକ)ଃ—ରମ୍ୟସ୍ତନେ । ସ୍ୱେର—ସୁଧାବ୍ଜନେତ୍ରେ !
ଶଦ୍ୟୋବିନୋଦେ ସ୍ମରଚକ୍ଷଣେ । ତ୍ୱଂ
ସ୍ତ୍ରୀରତ୍ନଭୂତେ ! ମୟି ମେ । ପ୍ରସୀଦ । ୬ ।

ଗୀତଃ—ଚନ୍ଦ୍ର ବଦନପ୍ରିୟା ମୋରେ ହୁଅ ସୁଦୟା
ବର୍ତ୍ତୁଳ ତୁଙ୍ଗରମ୍ୟସ୍ତନା,
ବିକଚ ପଦ୍ମ ନେତ୍ରି, ଦହ କନକ ଗାତ୍ରି
ସକଳ ବିଦ୍ୟା ବିଚକ୍ଷଣୀ ରେ,
ବାଳାରତ୍ନ,
ମୋହରେ ହୁଅ ତୁ ପ୍ରସନ୍ନ,
ନିଷ୍ଠୁର ପଞ୍ଚବାଣ ଘେନୁଅଛି ପରାଣ
ତୋ ପାଦେ ପଶିଲି ଶରଣରେ । ୬ ।

ଶ୍ଲୋକଃ—କାମାଭିରାମ । କାମାର୍ତ୍ତି ।
(ନାୟିକା)—ପ୍ରୀତ ବିଶ୍ରମ୍ଭ ଭାଜନ !
ସାର୍ଦ୍ଧଂ (୨) ସଖ୍ୟା ସମାଗଚ୍ଛ
ସ୍ୱକ୍ରମାର୍ଗେଣ ନ୍ୟରୁପଥ୍ୟକ । ୭ ।

---

(୧) ତୁଲ୍ୟ (ଟୀ)
(୨) ସାକମ୍ (ଟୀ)

ଗୀତ: - ଏସନ ଗୂଢ଼ ବାଣୀ କରୁଣଗ୍ରାମଣି
ଶୁଣି ସଲଜ୍ଜ ମନକଲ୍ପ,
ଚଞ୍ଚଲ ମନେ ତାର ଦହିଲା (୧) ପଞ୍ଚଶର
ଦଗ୍ଧାର୍ଦ୍ଧ ଚିନ୍ତ ତେଣୁ ହେଲା ସେ
ଗ୍ରାମାବର,
ଗୂଢ଼ରେ ତେଜିଣ ନଗ୍ରଣ,
ସୁମରି ପୂର୍ବକେଳି ସଦୟ ହୋଇ ବାଳୀ
କହଇ ହୋଇଣ ହରଷ ସେ ।
ନବୀନ ଫୁଲ ଶର, ସମ ସ୍ୱରୂପ ତୋର
କାମର୍ତ୍ତ ମୋ ପ୍ରୀତଭାଜନ
ସଖୀ ସଙ୍ଗତେ ତୁହି ଅନ୍ୟ ବେଶକୁ ବହି
ଆସ ଆନ ମାର୍ଗେ ବହନ ହେ,
ସ୍ତ୍ରୀବାବର,
ତତ୍ଷଣେ ସ୍ତ୍ରୀ ବେଶ ହୋଇ.
ସଖୀ ସଙ୍ଗତେ ତାର, ଆନ ମାର୍ଗରେ ଯାଇ
'ଇଚ୍ଛା'ର ସନ୍ନିଧେ ମିଳଇ ସେ, । ୭ ।

ଶ୍ଳୋକଃ:—ଅଦ୍ୟୈବ ପୁଣ୍ୟବିବସେ ମମ ଦେବୀ ! ବାଲେ !
(ନାୟକ)—ତ୍ୱତ୍ପାଦପଙ୍କଜଯୁଗଂଚ ଶତଲକ୍ୟତେ ଯତ୍,
ରମ୍ୟାତପୀନକଚଯନସ୍ତନସେବକଂ ମାଂ
ମୁଗ୍ଧେ ବିଧେହି ସଦୟେ୍ୟଧରପୀଠଲୁବ୍ଧମ୍ । ୮ ।

---

(୧) ଭେଦଲା(ଖ)

ଗୀତଃ—ଆଜ ମୋହର ପୁଣ୍ୟ ଦିବସ ଚନ୍ଦ୍ରମୁଖି !
ତୋ ପାଦ ପଦ୍ମକୁ ଦେଖିବା,
ମଞ୍ଜୁଳ ପୀନସ୍ତନ— ସେବକ କର ତଥି
ଉପରେ ମାର୍ଜନା ବାନ୍ଧିବାରେ,
ହରିଣାକ୍ଷି !
ମୁଁ ତୋ ଅଧରମଧୁ ଲୋଭୀ
ଦୟାଳୁ ଚିତ୍ତହୋଇ ମୋର ବେଦନ ହର
ପୂର୍ବ ତପରେ ଅଛି ଲଭିବେ ।୮।

ଶ୍ଳୋକଃ—ଘୃଣାକ୍ଷରନ୍ୟାୟବ ବିଧାନ ମେତଦ୍—
ବାନନ୍ଦିତା ତ୍ୱଂ ନୃପଜେ ! ବିଧାତ୍ରା,
ବିଧେସ୍ତୁ ଜାନାମି ସୁଚକୌଶଲତ୍ୱଂ
ସରୁପିତେୟଂ ଯଦି ଦୃଶ୍ୟତେଽନ୍ୟା ।୯।

ଗୀତ:—ଘୁଣାକ୍ଷର ପରିନ୍ୟାୟ କରିଣ ନୃପ ସୁତା
ନିର୍ମାଣ କଲା ତୋତେ ଧାତା,
ଆଉ ଯେବେ ତୋ ସମ ନାରୀ ସୃଷ୍ଟିରେ ଜଣେ
ନିର୍ମାଣ କରି ସେହୁ ଥାନ୍ତା ତେ,
ପଦ୍ମଲାକ୍ଷି,
ତେବେ ତା କୁଶଳତା-ଗଣ,
ଜାଣିଣ ପରଶଂସା କରନ୍ତେ ଜନେ ତାକୁ,
ବୋଲନ୍ତା ସେହୁ ଯେ ନିପୁଣରେ ।୯।

ଶ୍ଳୋକଃ—ଉକ୍ତଂ ତ୍ୱୟା ମଦନ—ସୁନ୍ଦର ! ପୂର୍ବମେତ—
(ନାୟିକା)—ସ୍ୱଂଦର୍ଶନାୟ ନନୁ ସଂପ୍ରତି ଚୈବ ଦୃଷ୍ଟମ୍,

ଗଚ୍ଛ ସ୍ୱକୀୟ ଭବନଂ ତ୍ୱରିତଂ ଚ ପଶ୍ୟ
ପ୍ରାଣେଶ୍ୱରୀଂ ତବ ମନୋରଥ ସିଦ୍ଧିରସ୍ତୁ ।୧୦।

ଗୀତ—ଅଭିନବ ମଦନ ପ୍ରତିବିମ୍ବ ମୋତେ ମାଗିଣ
ଥିଲୁ କାଞ୍ଚିତ ଦରଶନ,
ଏବେ ସେ ଦରଶନ ହୋଇଲା ତୋର ପୂର୍ଣ୍ଣ
ବେଗେ ତୁ ଚଳ ସେ ସଦନ ହେ,
ଯୁବାମଣି,
ଯାଇ ତୋ ଦେଖ ପ୍ରାଣ ପ୍ରିୟା
ସେ ତୋର ମନୋରଥ ସିଦ୍ଧି କରାଇବ
ହୋଇଣ ତୋ ରସେ ସୁଦୟା ରେ ।୧୦।

ଶ୍ଳୋକଃ—ତ୍ୱମେବ ମେ ଭୂପତଟେଜ ନିବାସଃ
(ନାୟକ)—ତ୍ୱମେବ ଜୀବେଶ୍ୱରି ! ନାସ୍ତି ମେଽନ୍ୟା,(୧)
ପ୍ରସନ୍ନତା ତେ ସକଳାର୍ଥସିଦ୍ଧି-
ର୍ମନୋଜସମ୍ମୋହିନି ! ମାମବତ୍ୱମ୍ ।୧୧।

ଗୀତ—ତୁ ସେ ନୃପତି ବାଳା ମୋ ଜୀବ ନିକେତନ,
ତୁ ମୋର ପ୍ରାଣର ଈଶ୍ୱରୀ,
ତୋ ବିନୁ ଆରେ ବାଳା ଅନେକ ରତି ଲୀଳା
ତୁ ମୋର କଣ୍ଠରତ୍ନ ସରିରେ,
ମଦାଳସି !
ପ୍ରସନ୍ନ ଯେବେ ହେଲୁ ମାନି !
ମୋର ସକଳ ଇଷ୍ଟ ସିଦ୍ଧି କ ଲଭିଲଇଁ
ରଖ ତୁ ଅନଙ୍ଗମୋହିନି ରେ ।୧୧।

---

(୧)—ପ୍ରାଣେଶ୍ୱରୀ ତ୍ୱଂ ମମ ନାସ୍ତି ଗୃହ୍ୟା(ଖ)

ଶ୍ଳୋକଃ—ତବ ନଶିତକଟାକ୍ଷକ୍ଷିପ୍ତବାଣବ୍ରଣାର୍ତ୍ତିଂ,
(ନାୟକ)—ମମ ତନୁ ମନୁରକ୍ତେ ଜୀବୟସୈ୍ୟାଷଧେନ,
ତ୍ୱଦଧର-ମଧୁପାନଂ କ୍ଷେପୟେତ୍ କାଂପରେ ବା
ସ୍ତନଜଘନବିଲଗ୍ନାଲିଙ୍ଗନଂ ଗାତ୍ରଲେପମ୍ ।୧୨।

ଗୀତ—ମୋର ତୀକ୍ଷ୍ଣକଟାକ୍ଷ ବ୍ରଣ ସମୂହ ଘାତେ
ତନୁ ହେଉଛି ମୋର ବ୍ରଣ
ତୁ ଅନୁରାଗୀ ମୋର ଉଚିତ ଔଷଧରେ
ଦେଇଣ କର ତୁ ଶରଣରେ
ପିକଭୂଷି ।
ତୋ ମଧୁ ପାନ ଅନ୍ତ କ୍ଷେପ,
ସ୍ତନ ଜଘନ ନାନା ବିଳାସ ଦେଇ ମୋରେ
କର ତୁ ଗାତ୍ରରେ ଲେପନ ରେ ।୧୩।

ଶ୍ଳୋକ—କ୍ରୀଡ଼ାର୍ଥଂ ମଦନାତୁରା । ସମୁଦ୍ୟତାଃ ପଞ୍ଚତ-ଲଜ୍ଜାଭୟା
କାନ୍ତଂ କେଳିନିକେତନଂ ନୃପସୁତା ନୀତ୍ୱାତୁଶୟ୍ୟୋପରି,
ଷଣ୍ଣାପ୍ୟାଗୁରୁଚନ୍ଦନଂ ସୁକୁସୁମଂ କର୍ପୂରପୂଗଂ ପୁରେ-
ଦତ୍ତ୍ୱା ପୀଡ଼୍ୟ ସଖୀକରଂ ପ୍ରହସିତା କଂଚେନ ଦୂରୀକୃତା
।୧୩।

ଗୀତ—ଏ ଯେ ନୃପକୁମାରୀ ମଦନ ଶରେ ଝୁରି
ମିଶାଇ ଲଜ୍ଜା ଭୟ ବେନି,
କାମେ ହୋଇ ଆତୁର ଧରି କର ସୁନ୍ଦର
ପଲଙ୍କେ ନେଲା ଚନ୍ଦ୍ରାନନୀ ଯେ,
ସୁରୁକେଶୀ,

କର୍ପୂର କସ୍ତୁରି ଚନ୍ଦନ,
କୁସୁମ ମାଳା ସଖୀ   କରେ ସ୍ନେହରେ ଦେଲା
ଜାଣି ସେ ଚଳାଇ ବହନ ।୧୪।

ଶ୍ଲୋକ—ସବ୍ରୀଡ଼ାଂ ହି ବହିର୍ଗତାଂ ପ୍ରିୟସଖୀଂ ଦୃଷ୍ଟ୍ବା ସ କାମାତୁର
ସ୍ତନ୍ୟାଃ ପୀନଘନସ୍ତନୋରୁଜଘନାଦାକୃଷ୍ୟ ଚୀନାଶୁକମ୍,
କୃତ୍ବାଲିଙ୍ଗନଚୁମ୍ବନଂ ନୃପଭୁବଃ ପୀତ୍ବାଧରଂ ତାଡୟନ୍
ମର୍ଦ୍ଦନ୍ ଦନ୍ତନଖକ୍ଷତାନି କୁରୁତେ ସୋଭଂ ଚ
ନାଭ୍ୟାସ୍ତତଃ ।୧୪।

ଗୀତ:—ଦେଖିଲା ପ୍ରିୟସଖୀ   ଜନେ ଅନ୍ତର ହେଲେ
ଲଜ୍ଜିତମତ୍ତ ସ୍ବମାବର,
କାମେ ଆତୁର ହୋଇ   ରସିକବର ତହିଁ
ରମାଅଂଶୁକ କଲା ଦୂର ସେ,
ଚୀନଚେଲା,
ହେରନ୍ତେ ଦଣେ ସର୍ବ ଅଙ୍ଗ
ପୀନ ବର୍ତ୍ତୁଳ ସ୍ତନ   ନାଭି ଉର ଜଘନ
ଦେଖି ତା ବଢ଼ିଲା ଅଙ୍ଗ ସେ ।୧୫।
ଆଲିଙ୍ଗନ କରିଣ   ଜାନୁରେ ବସାଇଣ
ଚୁମ୍ବିଲା ସୁନ୍ଦରୀ ଅଧର
ତୀକ୍ଷ୍ଣନଖେ ଅଙ୍କିତ   ସୁତୁଙ୍ଗ ପୟୋଧର
ଦାନ୍ତ ଦଂଶନ ଗଣ୍ଡପର ସେ,
କାମିବର
ସୁରକେଳିବିଧାନ ସେତେ,
ରଚନା କରି ତାର   ମନ ସନ୍ତୋଷ କଲା
କବି କହିବ ଅବା କେତେ, ସେ, ।୧୬।

ଶ୍ଲୋକ—ପ୍ରାଦର୍ଶଞ୍ଜଘନସ୍ଥଲଂ ସ୍ତନଯୁଗଂ ଲଜ୍ଜାଭରବ୍ୟାକୁଳା
ବାଲା ଯା କବରୀସ୍ଥପୁଷ୍ପବିଲସନ୍ମାଲାହୃତେ ଦୀପକେ
ତଚ୍ଚନ୍ଦ୍ରସ୍ଫୁଟତେଜସା ସମଭବତ୍ ଦୀପୋଽପ୍ୟମନ୍ୟତ୍ ସ୍ଫୁଟଂ
ଦୃଷ୍ଟ୍ୱା କାନ୍ତଗୁଣାଧିକଂ ସ୍ମିତମୁଖୀ
ତନ୍ୱ୍ୟତ୍ରଲଜ୍ଜାଭବତ୍ । ୧୫ ।

ଗୀତ— ସ୍ତନ ଭର ଜଘନ ଦେଖି ସଲଜ୍ଜାଭର
ହୋଇଲା ରମଣୀ ସେ ସଖି
କବରୀରୁ କୁସୁମ-ମାଳା ଘେନିଣ ଦୀପେ,
ମାଇଲା ଚତୁରୀ ରମଣୀ, ସେ,
ଗୃହବର ।
ରତ୍ନ ମାନଙ୍କେ ଅଲେକତ
ଅଙ୍ଗ ପ୍ରକାଶ ଦେଖି ହୋଇ ସେ ସ୍ମିତମୁଖୀ
ଲଜ୍ଜାକୁ ତେଜିଲା ତୁରିତ ସେ ।୧୬।

ଶ୍ଲୋକଃ (ନାୟକ)—
ସଦ୍ୟୋଗ୍ୟଂ ସୁମନୋହରଂ ହି ମଧୁରାଲାପଂ ଚଳତ୍ପାଦୟୋ
ର୍ନାଦଂ ମମ ନୂପୁରଦ୍ୱୟମିଦଂ ସାନ୍ଦ୍ରଂ ରଣତ୍କାରତଃ,
ପଶ୍ୟ ତ୍ୱଂ ସୁରତୋପଚାରକଥନଂ ପ୍ରୋକ୍ତୈଃ କପୋତ୍ୟାକ୍ଷିତଃ
ବସ୍ତ୍ରାସାତ୍ତୁ ବହିଷ୍କୃତଂ ଫଳତି ତତ୍ କସ୍ୟୈବ ବିଶ୍ୱସ୍ୟତେ ।୧୭

ଗୀତ— ବୋଲଇ ସୁବାମଣି ଶୁଣପ୍ରାଣ ମିତଣି ।
ମୋଠାରେ ଅନୁଗ୍ରହ କର
ପ୍ରକାଶ କର ଏବେ ବିପରୀତ ଶୃଙ୍ଗାର
ଏତେ ମୋ ଜୀବନ ଉଦ୍ଧର ରେ,

କୋମଳାଂଗି !
ମୁଖର ଏ ପଦମଞ୍ଜୀର
ବୋଲଇ ରଣ ରଣ ହୋଇ ଅତ ଚଞ୍ଚଳ
ତେଣୁ ଏହାକୁ ସ୍ଥିର କର ରେ ।୮।

ଶ୍ଲୋକଃ—ଶୃଂଗାରମେତତ୍ କପଟୀକ ମନ୍ଦ
ସମାଚରନ୍ତ୍ୟାଃ ସୁଭଗେଽଡଲୋଲେ ! (୧)
ମନେ୍ୟ ଶଶୀକୁଣ୍ଡଳ-ଛଦ୍ମରୂପୋ
ଗଣ୍ଡସ୍ଥଳଂ ଚୁମ୍ବତ ତେ ସକାମୀ ।୦୭।

ଗୀତ—ମଧ୍ୟ ସ୍ଥାନରେ ଥାଇ ଗୋପିତ ଭାବ ହୋଇ
ସମସ୍ତ ଗୁଣରେ ଶୋଭନ
ରସେ ମଞ୍ଜୁଳ ବାଣୀ କାମକେଳି ଧରଣୀ
ତାକୁ କରୁଅଛ ଘନ ସ୍ୱନ, ରେ,
ସରୋଜାକ୍ଷି !
ନୋହେ ସେ ସହଜ ମୁଖର,
ମୁଖର ମାର ରସେ ଉଦ୍ଦୀପନ କାରିଣୀ
ଏଣୁ ତା ମୁଖର ବେଭାର, ରେ, ।୧୯।

ଶ୍ଲୋକଃ—ଉଦ୍ଧୁରସ୍ତନଯୁଗ୍ମପୀଡ଼ିତ-
ଦୃଢ଼ାଶ୍ଳେଷେଣ ତେଽଦ୍ୟପ୍ରିୟେ
ଦନ୍ତାଘାତନଖକ୍ଷତୈଃ
ସୁମନ୍ଦସ୍ମିତାପେଶ୍ୱ ଚୁମ୍ବୈ ସ୍ୱକୈଃ,

---

(୧)—ମୂଳଗ୍ରନ୍ଥ ଶ୍ଲୋକଃ (ଖ)

ନାନାବନ୍ଧବନେ ଧନ୍ଦାଃସ୍ମି କୁରୁଷେ (୧)
ଚୈତତ୍ କୃତେ ସାର୍ଥକଂ
ଗାନଂ ମେ ପୁରୁଷାପ୍ରିତେନ ହର ଭେ (୨)
କନ୍ଦର୍ପବ ଶବ୍ୟଥାମ୍ ।୧୮।

ଗୀତଃ—ବିପରୀତ ଶୃଙ୍ଗାର କରନ୍ତେ ରମାବର
ତାଙ୍କ ଯୁଗଳ ଚଞ୍ଚଳ
କମ୍ପେ ସ୍ତନଯୁଗଳ ଦୋଳନ୍ତ ମୋତିମାଳା
ତରଳ ନୟନ ନିଶ୍ଚଳ ସେ
ରମାମୁଖ
ଶ୍ରମସ୍ୱେଦରେ ଶୋଭିପାଇ
ଯେସନେ ପୂର୍ଣ୍ଣଶଶୀ ଅମିୟ ଉଦୟ ମିଶି
ମୋତିକଳାପ ବରଷଇ ରେ ।୨୬।

ଶ୍ଲୋକଃ—ଯଦବ୍ୟକ୍ତଂ ମୁଖତଃ ଶିଞ୍ଜିନଗୁଣମିଦଂ ପାଦାହତଂ କର୍କଶଂ
(ନାୟକ)ନଃଶଇଂ ଭବତୀହ ନୂପୁରଯୁଗଂ ଦ୍ୱୈତତ୍ କୃତେ ମେ ପ୍ରିୟେ
ଗୋପ୍ୟସ୍ଥା କଟିମେଖଳା ଘନରବଂ ବାଞ୍ଛାପୟତ୍ୟାଶ୍ରିତାନ୍
ମଧ୍ୟସ୍ଥାନ୍ତୁ ଧ୍ରୁବସ୍ୱନେ ଗୁଣବତୀ ସୁପ୍ରୀତିକାରିଣ୍ୟପି ।

ଗୀତ—ଶୁଣଗୋ ନୃପତିସୁତା ଶୁଣ ମୋର ବିନୟ
ସଂସାରେ ସେହି ପୁଣ ଧନ୍ୟ
ଯେ ତୋ ଅଧରୁ ମଧୁ ପାନ କରିଛି ପ୍ରିୟା
କହି ନୁହଇ ତାର ପୁଣ୍ୟରେ,
କୁନ୍ଦଦନ୍ତି !

---

(୧)—ବନୋଦତୋଷ୍ୱକରସୈଃ (ଖ)
(୨)—ଶମିତା (ଖ)

ସେହି ନୟନେ ସେ ନୟନ,
ବାସ ନ ଥିବା କାଳେ ଯେ ତୋ ସର୍ବ ଅଙ୍ଗକୁ
କରିଣ ଅଛି ବିଲୋକନ ରେ, ।୨୧।

ଶ୍ଳୋକଃ—ତଦ୍ ବନ୍ଦେ ରୁଚିରାନନେ !
ଯଦାଧରାଦଦ୍ୟାମୃତଂ ସ୍ୱାଦିତଂ
(ନାୟକ) ଯାଭ୍ୟାଂତେ (?)ନୟନେ ନତେ୍ରୈଲରହିତଂ
ସର୍ବାଙ୍ଗମାଲୋକ୍ୟତେ,
ତୌ ହସ୍ତୌ ଜଘନସ୍ଥଳଂ ସ୍ତନଯୁଗଂ
ସଂସେବ୍ୟମାନୌ ଚ ତୌ
ତଦ୍‌ଗାତ୍ରଂ ତପସାର୍ଜିତ ରତିସୁଖଂ
ପ୍ରାପ୍ତାଙ୍ଗ ସଙ୍ଗଞ୍ଚ ଯତ୍ ।୨୦।

ଗୀତଃ—ଯେ ବେନି ହସ୍ତକୁ ଯେ ହସ୍ତ କରିଣ ମୁହିଁ
ପ୍ରଶଂସା କରିଣ ଜୀବନ
ଏ ତୋର ପୀନସ୍ତନ, ଉରୁଗୁରୁ ଜଘନ
ଏସର୍ବ କରିଚ୍ଛି ସେବନ ରେ,
କୁନ୍ଦଦନ୍ତ ।
ତାହାକୁ ବୋଲି ସେ ଶ୍ରବଣ
ତୋର ମୃଦୁ ମଧୁର ବାଣୀ ପଙ୍କ୍ତି ରୁଚିର—
ଯୁକ୍ତ ସେ କରିଚ୍ଛି ଶ୍ରବଣରେ ।୨୨।

ଶ୍ଳୋକଃ—ଦୃଷ୍ଟିବ୍ୟ (୧) ପୀନସ୍ତନଯୁଗ୍ମମାସ୍ୟଂ,
(ନାୟକ—)ଭଙ୍ଗିଚାରୁରମ୍ୟଂ ଜଘନସ୍ଥଳଂ ଚ,
ଭବତ୍ପୀବରଂ ରମ୍ୟନିତମ୍ବବିମ୍ବଂ
କାଣୀତ (୨) ଧନ୍ୟଃ କଥମନ୍ୟଲୋକେ ।

---

(୧)—ଗୃହ୍ଣୁ (ଖ)
(୨)—କୀର୍ତ୍ତେଇ (ଖ)

ଗୀତ —ଶୁଣ ଆରେ ସୁଜନୁ    ଯେ ତନୁ ଜାଣ ତନୁ
ଏ ତୋର ତନୁ  ତନୁଜଙ୍କ
ଲଭନ୍ତି ମର୍ତ୍ତ୍ୟପୁରେ    ନାନା ବିନୋଦଭରେ
ଇତର ମଣେ  ସୁର ସଙ୍ଗରେ,
ବାଳାଗଣେ,
ଯେ ନାସା ନାସା ବୋଲି  ଜାଣି
ସେ ତୋର ପଦ୍ମମୁଖ    ଗନ୍ଧ ଆଘ୍ରାଣ କରି
ଅଛି ଶୁଣ ପଦ୍ମିଣମଣି, ରେ ।୨୩।

ଶ୍ଳୋକଃ — ନିଶାବଶେଷୋ ରମଣାଭିଳାଷଃ
(ନାୟିକା —ସିଦ୍ଧସ୍ତବାଽପୀପ୍ସିତ କାମଃ ପରନ୍ତୁ,
ଯଥା ନ ଜାନାନ୍ତି ଜନୋଽପି କଶ୍ଚି—
ଦତସ୍ତଥା ଯାହି ପୁନସ୍ତ୍ୱମେହି ।୨[illegible]।

ଗୀତ — ନିଶା ହୋଇଛି ଶେଷ    ଶୁଣ ହେ କାମିବର
ହେଲା ତୋ ମନୋରଥ ପୂର୍ଣ୍ଣ,
ଯେମନ୍ତେ ପୁରଜନ —   ମାନେ ହେ ନ ଜାଣିବେ
ସେରୂପେ କର ତୁ ଗମନ  ହେ,
ପ୍ରାଣେଶ୍ୱର
ତୁମ୍ଭେ ତ ସୁଜାଣ ଚତୁର
ମୁହିଁ ଜାଣ ଅବଳା    ନୃପତ ଅନ୍ତଃପୁରୀ
ତେଣୁ ମୋ ସଂଶୟ ମନର ହେ ।୨୪।

ଶ୍ଳୋକଃ— ତବାସ୍ତୁ ମେଽନୁଗ୍ରହ ଏଷ ଦେବ ।
(ନାୟକ)—ଭବଦଙ୍ଗସଙ୍ଗାତ୍ ସଫଳଂ ହି ଜନ୍ମ,
ନବପ୍ରିୟାୟା ବିରହାସିଲ୍ନ—
ମନୋବ୍ୟଥା —ଭେଷଜମନ୍ୟଦସ୍ତି ।୨୩।

ଗୀତ—ତୋ ଅଙ୍ଗସଙ୍ଗ ଦେଇ ସୁଫଳ କରିଅଛୁ
ହେ ପ୍ରିୟେ ଦେହ ମୋର ବିଗ୍ରହ
ହେବେ ମେ ହୃଦରେ ଯାଅ ବୋଇଲୁ ପ୍ରାଣପ୍ରିୟା
ଜାଣିଲି ପ୍ରିୟେ ତୋର ନିଗ୍ରହ, ରେ,
ପ୍ରାଣବନ୍ଧୁ !
ପ୍ରିୟା ବିଚ୍ଛେଦ ଅଭିଘାତ,
ପ୍ରିୟେଥିଲି ଆନ ଅଭ— ଷଧି କିଛି ନାହିଁତ,
ତୋର କୃପାରେ ଆଶ୍ୱାସିତ ରେ ।୨୫।

ଶ୍ଳୋକଃ -ନ ସ୍ନାନଂ ନଚ ଭୋଜନଂ ନ ପଠନଂ
ନାନ୍ୟତ୍ ସୌଖ୍ୟଂ ପ୍ରିୟେ । (୧)
ନାନ୍ୟସ୍ତ୍ରୀଜନସେବନଂ ନଚ କଥା
ନିଦ୍ରାପି ନାସ୍ତେ ମମ । (୨)
କିନ୍ତୁ ତ୍ୱାଂ ପରିଚିନ୍ତୟାମି ସତତଂ
ଧ୍ୟାନେନ ଚେତଃସ୍ଥିତାଂ
ସ୍ୱପ୍ନାଲୋକନ-କାମକେଳି-ବିଧିନା
ଜୀବାମି କାନ୍ତେ । ତବ ।୨୬।

ଗୀତ—ତୋର ବିନୁ ଗୋ ଧନ ନାହିଁ ସ୍ନାନ, ଭୋଜନ,
ପଠନ ( ? ) ରମଣୀ ସେବନ,
ନ ଘେନେ ରସେ ମନ ନ ସରେ ମୋର ଦିନ
ନ ଭଜେ ନିଦ୍ରାକୁ ନୟନ ଗୋ
ପ୍ରାଣଧନ;

(୧)—ସୌଖ୍ୟାଦୃତଃ (ଖ)
(୨)—ନିଦ୍ରାପି ନାନ୍ୟୋଦ୍ୟମଃ (ଖ)

ଅନବରତେ ତୋ ଚିନ୍ତନ
ସ୍ୱପ୍ନରେ ଅବଲୋକନ ତୋର କେଳି ବିଧାନ
ଗୁଣି ମୁଁ ରଖିଛି ଜୀବନରେ ।୨୭।

ଶ୍ଳୋକଃ—ରାତ୍ରିଃ କାଳଯୁଗୋପମା ମଳୟଜୋ
ଗନ୍ଧାନିଳଃ କିଂ ବିଷଂ
ସୋମଃ ସୂର୍ଯ୍ୟ ଇବାଭବନ୍ମଳୟଜା —
ଲେପଃ ସ୍ଫୁଲିଙ୍ଗୋପମଃ ।
ଉକ୍ତଃ ସୁସ୍ୱରବାଦ୍ୟଗୀତପରଭୃତ୍-
ପାରାବତାଦିଧ୍ୱନିଃ
ବଜ୍ରସ୍ୟାହତିରେବ କର୍ଣ୍ଣଯୁଗଳେ
ବିଚ୍ଛେଦତୋ ମେ ତବ । ୨୫ ।

ଗୀତ—ତୋହର ବିନୁ ବାଳା ରଜନୀ ଯୁଗ ପରି
ଅନଳ ପ୍ରକାର ଚନ୍ଦନ
ମଳୟ ସମୀରଣ ବିଷ ପରିଚୟ ଜାଣି
କରୁଛି ଅଧିକେ ଦହନ ରେ
ପ୍ରାଣଧନ
କୋକିଳ ଗୀତବାଦ୍ୟସ୍ୱନ
ହୋଏ ବିଚ୍ଛେଦୁ ତୋର, କର୍ଣ୍ଣ ଯୁଗଳେ ମୋର
ଅଶନି ପତନ ସମାନ ରେ ।୨୭।

ଶ୍ଳୋକଃ—ଚନ୍ଦ୍ରୋ ଦ୍ୱାଦଶଭାସ୍କରଃ ସମଭବ-
ଦ୍ରାତ୍ରିର୍ଯୁଗାନାଂ ଶତଂ
ମିଷ୍ଟଂ ତକ୍ରରସଂ ବିଲେପନମହୋ
ଦାବାନଲୋ ମେ ତବ ।

ବଚ୍ଛେଦାନଲଯ୍ୟାନଳଃ ପ୍ରିୟତମେ ।
କିଂ କାଳକୂଟଃ ଶ୍ରୁତୌ।
ଗୀତାଞ୍ଚନ୍ଦନରେବ ବଜ୍ରସଦୃଶୋ—
ୟରଣ୍ୟଂ କଠିନଂ ଗୃହମ୍ ।୨୭।

ଗୀତ:— ତୋହର ବିହୀନେ ମୋର ହୃଦୟେ ପଶିଣର
କରିବସନ୍ତ × କାତର
ଦ୍ୱାଦଶ ଚଣ୍ଡକର ସମାନ ଶଶଧର
ରଜନୀ ଯୁଗର ଆକାର ରେ,
ପ୍ରାଣବନ୍ଧୁ .
ଅମୃତ ରସମୟ ତୋର
ତକ୍ର ସମ ଆହାର ନ ଭଜିବ ମନର
ଅରଣ୍ୟ ସମ ଦିବ୍ୟପୁର ରେ ।୮।
ମଳୟଜ ଲେପନ ହୁତବହ ସମାନ
ସୁଗନ୍ଧ ମଳୟଜ ବନ,
ତୋ ବିନୁ ମୋର ଏହୁ କାଳକୂଟ ସମାନ
ନିଶ୍ଚୟେ ହେବ ପ୍ରାଣଧନ ରେ,
ପିକଭଣି !
ବଚନ କୁଳିଶ ସମାନ,
ସୁସ୍ୱର ଗୀତ ସ୍ୱନ ଶୁଭଇ ଆନୁଆନ
ଶୁକ ସାରିକା ଧ୍ୱନମାନ ରେ । ୨୯ ।

ଶ୍ଲୋକଃ— ମାନଂ ମାନ୍ନନ । ମୁଞ୍ଚ ଦେବି ଦୟିତେ !
ମିଥ୍ୟାବଚଃ ଶ୍ରୂୟତେ,
କିଂ କୋପୋ ନିଜସେବକେ ଯଦି ବଚଃ
ସତ୍ୟଂ ଭୟା ଗୃହ୍ୟତେ ।

ଦୋର୍ଭ୍ୟାଂ ବନ୍ଧନମାଶୁ ଦନ୍ତଦଳନଂ
ପୀନସ୍ତନାସ୍ଫାଳନଂ
ଦୋଷଶ୍ଚେନ୍ମମ ତେ କଠାଯବାଣିଭିଃ
ଶତସ୍ତ୍ରିଂ ପ୍ରହାରଂ କୁରୁ । ୨୭ ।

**ଗୀତ—** ମାନିନି ! ମାନ ତେଜ ନିଜ ସେବକ ଜନେ
ମିଥ୍ୟାବଚନ ଶୁଣି କର୍ଣ୍ଣେ
କୋପ କମାଇଁ ମନେ ଦନ୍ତୁ ଅଙ୍କମାନେ
ସଦପ୍ର ନୁଅ ନିଜ ଜନେ ଗୋ,
ଯେବେ ଧିଯ୍ୟା
ଏକୁ ବଚନ ଶୁଣୁ ସତ,
ବାହୁ ପାଶେ ବନ୍ଧନ କରି ଦନ୍ତେ ଦଶନ
କୁଚଭୂଧରେ ତାଡ଼ ମିତ ଗୋ । ୩୦ ।
ଯେବେ ମୋଦୋଷବୋଲି ଜାଣିଲୁ ପ୍ରାଣମଣି
ମୋତେ କର ନିର୍ଦ୍ଦୟେ ଦଣ୍ଡ
ଅଞ୍ଜନ ବକ୍ଷେବନ୍ଧ କରି କଟାକ୍ଷଶରେ
ତନୁ ମୋ କର ଖଣ୍ଡ ଖଣ୍ଡ ଗୋ,
ଜାଣି ମୋରେ
ବଗୁରି ଶାସ୍ତି ଦିଅ ରମା,
ଦୋଷ ନଥିଲେ ମୋର ସଦୟ ହୋଇ ପ୍ରିୟେ !
ସଙ୍ଗରେ ହୋଇ ବସ ବାମା ରେ । ୩୧ ।

**ଶ୍ଳୋକଃ—** ନାନାକଥ କୌତୁକକେଳିଭିଃ ସା
ମାର୍ଦ୍ଧଂ ତୁ ତେନୈବ ରମେତ ନିତ୍ୟମ୍,
ହର୍ମ୍ୟେ ସୁରମ୍ୟେ ରମତେଽତଗୁପ୍ତେ
ଯୁକ୍ତା ସଖୀଭିଃ ପରମପ୍ରିୟାଭିଃ । ୨୮ ।

ଗୀତ— ରମ୍ୟ ସପ୍ତଧପୁର ଉପବନ ଅନ୍ତର
ସଙ୍ଗତେ ଘେନ ସଖୀଜନ,
ନାନା କେଳିବିକାଶ ମଧୁର କ୍ରୀଡ଼ାହାସ
ରସରେ ନଅନ୍ତି ସେ ଦିନ ସେ,
କାମିବର
ଯେମନ୍ତେ ନୃପ ସୁତା ସଙ୍ଗେ
ନାନା ବିବିଧ ବନ୍ଧେ ବିବିଧ ରତମାନ
ରଚିଲେ ଦେନି ଜନ ରଙ୍ଗେ ସେ ।୩୨।

ଶ୍ଳୋକଃ— କାମାର୍ତ୍ତେ ନବଯୌବନଃ କବିବରସ୍ତ୍ରି
ଭୂପାଳପୁତ୍ର୍ୟା ସମଂ
ନାନା-ବନ୍ଧ-ବିନୋଦ-ନିର୍ଭର-ରତ
କ୍ରୀଡ଼ାରସୈରନ୍ୱିତଃ
ଘ୍ରିଂ ଭ୍ରାନ୍ତଃପୁରତୋ ବହିର୍ବିଲସିତୋ
ରାଜ ଗୃତୋ ନୀୟତେ
ଚୌରସ୍ତ୍ରେ ରାଜନିଯୋଜିତୈଃ ସୁପୁରକ୍ଷି
ଶ୍ଚାରୈ ରୁପାଯୁଷମୈଃ ୨୯

ଗୀତ— କାମେ ହୋଇ ଉଚ୍ଛନ୍ନ ଭ୍ରମନ୍ତେ ଉପବନ
ପୁରଦ୍ୱାରେ ହୋଇଲେ ଆସି,
ଜାଣି ରାଜା ଚର ମାର ହେ ରତ ଚୋର
କଣ୍ଠକୁ ଧରିଣ ସନ୍ତୋଷି ସେ,
ଘ୍ରରଗଣେ,
କଲେକ ନୃପ ପୁରନ୍ଦର,
ଦେଖିଣ ଦଣ୍ଡଧାରୀ ବୋଲେ ସେ କ୍ରୋଧ କରି
ଏହାକୁ ବେଗେ ନେଇ ମାର ରେ ।୩୩।

ଶ୍ଲୋକଃ—ରାଜା ତାନପି ସେବକାନ୍ ବନ୍ଧବଧଂ
ହୁଂକାରପୂର୍ବଂ କୃଧା
ଚୌରଂ ଛିନ୍ଧି ସ୍ଫୁଟଂ ତ୍ୟୁବାଚ ବଚନଂ
ଖଡ୍‌ଗଂ ସମାଦୀୟତେ,
ନୀତ୍ୱା ତଂ ଭବନାଦ୍ ବହିର୍ବିଲସିତଂ
ରାଜାତ୍ମଜା ସାହସା-
ଦୃଷ୍ଟ୍ୱା ସୁନ୍ଦର ଦେବତାମିତ ବଚ୍ମ୍ୟେତ୍ୟୁଚୁଃ
ସଚୌରୈବଦତ୍ ।୩୦।

ଗୀତ—ନୃପ ଆଦେଶ ଶିରେ ଘେନ ରାଜ ଭଟରେ
ନଗ୍ର ବାହାର କରି ନେଇ,
ଖଡ଼ଗ କରେ ଧରି ଟାଙ୍କନ୍ତି ରୋଷ କରି
ବୋଲନ୍ତି ବୁଝନ୍ତୁ ଅନାଇ ରେ
ରଙ୍ଗରୋର,
ନୃପତି ନନ୍ଦିନୀ ସାହସ
କଲରୁ ଗଲୁ ନାଶ ଛାଡ଼ ଜୀବନଆଶ
ସୁମର ବେଗେ ପୀତବାସ ରେ ।୩୪।
ଗୋପୀ ନେତ୍ର ଚକୋର ଆନନ୍ଦ ସୁଧାକର
ଅଘ ତିମିର ଚନ୍ଦ୍ରକର
ଭକ୍ତମାନସ ହଂସ ନୀଳାଶୈଳ ପ୍ରକାଶ
ଦାରୁ ଦେହରେ ନିରାକାର ହେ,
ସାଧୁଜନେ
ତାଙ୍କ ଚରଣେ ଦେଇ ମନ
ନୃପତି ଧନଞ୍ଜୟ ସର୍ବ ବିଷୟ ତେଜି
ସେ ରୂପ ଧ୍ୟାନ୍ତି ବସି ଦିନ ସେ ।୩୫।

# ଅଷ୍ଟମ ଛାନ୍ଦ

ରାଗ - ବୈଷ୍ଣବୀ

**ଶ୍ଳୋକଃ**—ଅଦ୍ୟାପି ତାଂ କନକଚମ୍ପକଦାମଗୌରୀଂ
**(ନାୟକ)** ଫୁଲ୍ଲାରବିନ୍ଦବଦନାଂ ତନୁରୋମରାଜିମ୍,
ସୁପ୍ତୋତ୍ଥିତାଂ ମଦନବିହ୍ୱଳଲାଲସାଙ୍ଗୀଂ
ବିଦ୍ୟାଂ ପ୍ରମାଦ-ଗୁଣିତାମିବ ଚିନ୍ତୟାମି ।୧।

**ଗୀତ**—ଶୁଣ ହେ ରସିକଜନ          ଏଥୁ ଅନନ୍ତରେ ପୁଣ
କରରେ ଖଡ଼ଗ ଧରି ନୃପ କିଙ୍କର,
କହନ୍ତି ସୁନ୍ଦରକୁ ବାଣୀ          ଶୁଣିସି ହୋ ମନ୍ଦ ପ୍ରାଣୀ
ପ୍ରେମନ୍ତ ସାହସ କମ୍ପା କଲୁ ନିର୍ଭର,
ପ୍ରେବେ ଗୁଡ଼ ପ୍ରାଣତ ଆଶ
ସୁମର ଇଷ୍ଟ ଦେବତା ହୋଇଛୁ ନାଶ, ।୧।
କହେ ସୁନ୍ଦର ଶୁଣ ଭାଇ   ପ୍ରେବେ ହେ ତାକୁ ଚିନ୍ତଇ
କନକ ଚମ୍ପକ ଦାମ ଗଉରଦେହୀ
ଫୁଲ୍ଲାରବିନ୍ଦ-ବଦନୀ          ସୁରୋମ-ରାଜି ରଞ୍ଜନୀ
ପୃଥୁ ଭୁଙ୍ଗତରସ୍ତନୀ ମୋ ପ୍ରାଣସହୀ
ସେହି ମୋର ଇଷ୍ଟଦେବତା
ଇଚ୍ଛାବତୀ ରମାବର ନୃପ ଦୁହିତା ।୨।

ଶଯ୍ୟାନୁ ଉଠିଣ ଥାଇ    ଅଳସିତ ଅଙ୍ଗ ହୋଇ
ଢୁମିତ ନେତ୍ରରେ ଢାଳ ମୋତେ ବୃହିଁଇ
ପୂଣ ନ ଟୁଟୁ ଜଘନ    ପୀନସ୍ତନରୁ ବସନ
ନଦ୍ରାଅଳସରେ ମିଶି ଶେଜ୍ୟା ରହିଛଇ,
ଯେବେ ସେ 'ଇଚ୍ଛା'କୁ ଚିନ୍ତଇ
ପ୍ରସନ୍ନ ଗୁଣିତବିଦ୍ୟା ସେ ମୋ ଅଟଇ, ।୩।

ଶ୍ଳୋକଃ—ଅଦ୍ୟାପି ତାଂ ଶଶିମୁଖୀଂ ନବଯୌବନାଢ୍ୟାଂ
ପୀନସ୍ତନୀଂ ପୁନରହଂ ଯଦି ଗୌରକାନ୍ତିମ୍,
ପଶ୍ୟାମି ମନ୍ମଥଶରାନଳପୀଡ଼ିତାଙ୍ଗୀଂ
ଗାତ୍ରାଣି ସମ୍ପ୍ରତି କରୋମି ସୁଶୀତଳାନି । ୨

ଗୀତ—ଯେମନ୍ତ ଦୃଷ୍ଟର ବାଣୀ    ଶୁଣିଣ ଦୋପାଧୁ ଭଣି
ଅବଶ୍ୟ ହୋଇବ ତୋର ପ୍ରାଣ ବିନାଶ,
ଚିନ୍ତ ତୁ ଦେବମୂରତି    ସଂସାରୁ ହୋଇବୁ ପାରି
ଯେବେ କି ନ ତେଜ ତାକେ ସେ ପ୍ରୀତି ଆଶ,
ଅଗ୍ନି ଲଗି ଯେସନ୍ତେ ପତଙ୍ଗ
ଇଚ୍ଛାବତୀ ଲାଗି ତେସନ୍ତେ ତେଜୁ ତୁ ଅଙ୍ଗ । ୪
ଦୃଷ୍ଟ ବୋଲଇ ଦୋପାଧ    ଗଲାଣିଲ ବୁଦ୍ଧି ଅସାଧ
ମତେ କି କହିଲୁ 'ଜଗନ୍ନାଥ' ସୁମର
ସମ୍ପୂର୍ଣ୍ଣ ଚନ୍ଦ୍ରମାନନୀ    ପୃଥୁଳ ବର୍ତ୍ତୁଳସ୍ତନୀ
ନବୀନ ଯୌବନୀ ଇଚ୍ଛା ମୋ ସମାଦର,
ସେ ମୋହର ଗଳାର ହାର
ଅବଳା ଚନ୍ଦ୍ର ଚନ୍ଦ୍ରମା ମୁଁହି ଚକୋର । ୫ ।
ପଙ୍କଜ ଦୃଷ୍ଟି ଲୋଚନା    ମତ୍ତମାତଙ୍ଗଗମନା
ମଞ୍ଜୁଳପିକବଚନା ତରୁଣୀ ମଣି

ରସାଳ ହେମ ବରନା  କୁନ୍ଦ କଳିକା ରଦନା
ନୃପତି କୋଳ ନନ୍ଦନା ସେ ମୋ ରମଣୀ
କେବେହେଁ ମୁଁ ଯେବେ ଦେଖିବି
ଅନଙ୍ଗ ତାପିତେ ଅଙ୍ଗ ଶାନ୍ତ କରିବି । ୨ ।

ଶ୍ଳୋକଃ—ଅଦ୍ୟାପି ତାଂ ଯଦି ପୁନଃ କମଲାୟତାକ୍ଷୀଂ,
ପଶ୍ୟାମି ପୀବରପୟୋଧରଭାରଖିନ୍ନାମ୍,
ସଂପୀଡ୍ୟ ବାହୁଯୁଗଳେନ ପିବାମି ବକ୍ତ୍ର—
ମୁନ୍ମତ୍ତବନ୍ମଧୁକରଃ କମଲଂ ଯଥେଷ୍ଟମ୍ । ୩ ।

ଗୀତ—ଏତେହେଁ ବେଳେ  ହେ ସର-ସାରସ-ନେତ୍ରୀକି ମୋର
ଦେଖିବି ମୋ କୋଟି ଜନ୍ମର ପୁଣ୍ୟ ଥିଲେ
ବେନି ଭୁଜେ ବେଗେ ଭିଡ଼ି  ଦୃଢ଼େ ଆଲିଙ୍ଗନ କରି
ଅଧର ଅମୀୟ ପାନ କରିବି ହେଲେ,
ଯେସନେ ସେ ମତ୍ତଭ୍ରମର
କରେ ପଦ୍ମ-ମଧୁପାନ ହୋଇ ନିର୍ଭର । ୭ ।

ଶ୍ଳୋକଃ—ଅଦ୍ୟାପି ତାଂ ନିଧୁବନ-କ୍ଲମନିଃସହାଙ୍ଗୀ—
ମାପାଣ୍ଡୁ ଗଣ୍ଡପତିତାଲକକୁନ୍ତଲାଲିମ୍,
ପ୍ରଚ୍ଛନ୍ନପାପକୃତମନ୍ଥରମାବହନ୍ତୀଂ
କଣ୍ଠାବସକ୍ତ-ମୃଦୁବାହୁଲତାଂ ସ୍ମରାମି । ୪ ।

ଗୀତ  ଯେବେ ହେ ତାକୁ ଚିନ୍ତଇ  ରତିଶ୍ରମ ବିନାଶଇ
ଏମନ୍ତ କୋମଳ ଅଙ୍ଗ ମୋର ବାଳାର
ପାଣ୍ଡୁର ଗଣ୍ଡମଣ୍ଡଳ—  ସହିତ ଚୂର୍ଣ୍ଣ କୁନ୍ତଳ
ମୃଦୁ ମୃଦୁ ହସିବାର ଅତି ରୁଚିର,
ସୁରତ ବିଷୟ ରସରେ
ମଞ୍ଜୁ ଭୁଜ କଣ୍ଠ ଛନ୍ଦି ମୋ ମନ ହରେ । ୮ ।

ଶ୍ଲୋକଃ—ଅଦ୍ୟାପି ତାଂ ସୁରତଜାଗରଘୂର୍ଣ୍ଣମାନ—
ତିର୍ଯ୍ୟଗ୍ବଲତ୍ତରଳତାରକମାୟତାକ୍ଷୀମ୍,
ଶୃଙ୍ଗାରସାର (୧) କମଳାକରରାଜହଂସୀଂ
ବ୍ରୀଡ଼ାବନମ୍ରବଦନାମୁଷସି (୨) ସ୍ମରାମି । ୫।

ଗୀତ—ଖଡ଼ଗ ଧରି ଦୋସାଧୁ ବୋଲଇ ବୃଦ୍ଧକୁ ବାଣୀ
ପୁଣି ତୁ ମୂଢ଼ ସୁମରୁ ନୃପନନ୍ଦିନୀ
ଦେଲୁ ତୁ ଅନଳେ ହାସ ତେଣୁ ଲଭୁ ଅଛୁ ନାଶ
ବାତୁଳ ପ୍ରାୟେକେ କହୁ ସେ ବାଣୀ
ଯେବେ ଚିନ୍ତ ଶାରଙ୍ଗଧାରୀ
ସ୍ତ୍ରୀ ନାମ ଧଇଲେ କ ହୋଇବୁ ପାରି । ୯ ।

ଶୁଣରେ ଦୋସାଧୁ ତୁହି ଏବେହେଁ ତାକୁ ଚିନ୍ତଇ
ସୁରତେ ଉନ୍ନିଦ୍ର ବେଶେ ଘୂର୍ମିତ ନେତ୍ର
ବଙ୍କେ ଘୂର୍ଣ୍ଣିବା ତରଙ୍ଗ ତରଳ ତାରକା ସଙ୍ଗ
ତେଟଣି କରି ପଡ଼ାନ୍ତ ମୋ ହରଇ ଗାତ୍ର
କାମରସ-ମାନସହଂସୀ
ସେ ମୋର ଇଷ୍ଟଦେବତା ଅମିୟହାସୀ । ୧୦ ।

ଶ୍ଲୋକଃ—ଅଦ୍ୟାପି ତାଂ ଯଦି ପୁନଃ ଶ୍ରବଣାୟତାକ୍ଷୀଂ
* ପଶ୍ୟାମି ଦୀର୍ଘବିରହଜ୍ୱରିତାଙ୍ଗଯଷ୍ଟିମ୍, (୩)
ଅଙ୍ଗୈରହଂ ସମୁପଗୁହ୍ୟ (୪) ତତୋଽତିଗାଢ଼ଂ
ନୋନ୍ମୀଲୟାମି ନୟନେ ନହି ତାଂ ସ୍ମରାମି । ୬ ।

---

(୧) ଶୃଙ୍ଗାର ବାର (ଖ) (୨) ମନସି
(୩) ଜ୍ୱରିତାଙ୍ଗୟଷ୍ଟିମ୍ (ଖ) (୪) ସମୁପଗୃହ୍ୟ (ଖ)

ଗୀତ—ଲଜ୍ଜାଭରେ ସୁରୁମୁଖ ନମ୍ର କରି କରି ଗ୍ରୀବା
ଉଷାକାଳେ ବସିଥାଇ ମୋର ଅଙ୍କରେ
ବିଶାଳ ପଙ୍କଜନେତ୍ରୀ ଚେ଼ ମୋହର ପ୍ରେମପାତ୍ରୀ
ଯେ ସମୟେ ଦେଖିବି କି ତାହାଙ୍କୁ ନେତ୍ରେ
ବିରହରେ ଶିଥିଳ ଅଙ୍ଗ,
ତନୁ ମୋ ତନୁ କରୁଛି ଦୁଷ୍ଟ ଅନଙ୍ଗ ।
ଯେବେ ହେ ଯେବେ ଦେଖିବି ନିବିଡ଼ ଆଶ୍ଳେଷ କରି
ନୟନ ବୁଜିଣ ଆଉ ଫେଡ଼ିବି ନାହିଁ
ସେ ସୁଖ ପରମାନନ୍ଦ ଲଭିଣ ହେବ ଆନନ୍ଦ
ପ୍ରାଣ ଥିବାଯାଏ ତାଙ୍କୁ ମୁର୍ଚ୍ଛିବି ନାହିଁ,
ହରିହର ବ୍ରହ୍ମା ମୋ ସେହି,
ଇଚ୍ଛା ବିନୁ କାମମୁକ୍ତ ଦେବ ହୋ କହି । ୧୨ ।
ଶ୍ଳୋକଃ -ଅଦ୍ୟାପି ତାଂ ସୁରତତାଣ୍ଡବସୂତ୍ରଧାରୀଂ
ପୂର୍ଣ୍ଣେନ୍ଦୁସୁନ୍ଦରମୁଖୀଂ ମଦବିହ୍ୱଳାଙ୍ଗୀମ୍ ।
ତନ୍ୱୀଂ ବିଶାଳଜଘନ (୧) ସ୍ତନଭାରଖିନ୍ନାଂ (୨)
ବ୍ୟାଲୋଲକୁନ୍ତଳକଳାପବତୀଂ ସ୍ମରାମି ।୭।
ଗୀତ—ସୁରତ ନାଟକ ସୂତ୍ର- ଧାରୀ ପୂର୍ଣ୍ଣଚନ୍ଦ୍ର ମୁଖୀ
ମଦନ ବିହ୍ୱଳ ଅଙ୍ଗ ଅଳସକାରୀ
ସୁରୁବିଶାଳ ଜଘନ ପ୍ରୁଥୁଳ ଉରଜ ଘନ
ଭରେ ଖିନ୍ନ ହୋଇଥାଇ ନବକିଶୋରୀ
ନୃପସୁତା ସେ ମୋ ଜୀବନ,
ବିଖେଳ କୁନ୍ତଳାବତୀ ତା,ରେ ମୋ ଧ୍ୟାନ । ୧୩ ।

---

(୧) ବିଶାଳ ନୟନାମ୍ (ଖ) (୨) ନମ୍ରାଂ (ଗ)

ଶ୍ଳୋକଃ—ଅଦ୍ୟାପି ତାଂ ମସୃଣଚନ୍ଦନପଙ୍କମିଶ୍ର—
କସ୍ତୂରିକାପରିମଳୋତ୍ଥବିସର୍ପିଗନ୍ଧାମ୍ (୧)
ଅନ୍ୟୋନ୍ୟଚଞ୍ଚୁପୁଟଚୁମ୍ବନଲଗ୍ନଖଞ୍ଜ—
ଯୁଗ୍ମାଭିରାମନୟନାଂ ଶୟନେ ସ୍ମରାମି ।୮।

ଗୀତ—ମସୃଣ ଚନ୍ଦନପଙ୍କ କସ୍ତୂରିକାରେ ସଂଯୋଗ
ହେବା ପରିମଳ ପରି ସୁଗନ୍ଧଗନ୍ଧ
ଯେନ୍ତ୍ର ଶ୍ୟାମାଙ୍ଗ ପୁଣ ଅନ୍ୟେ ଅନ୍ୟରେ ଚୁମ୍ବନ
ଖଞ୍ଜଯୁଗ୍ମ ପରି ଲଗ୍ନ ସୁନ୍ଦରନେତ୍ର,
ସେଥିରେ ଅଭିରାମ ତାହାର,
ଯେତେବେଳେ ସେ ସ୍ମୃତି ମନୁ ନୋହେ ପାସୋର । ୧୪ ।

ଶ୍ଳୋକଃ—ଅଦ୍ୟାପି ତତ୍ କନକ-ଗୌର-କୃତାଙ୍ଗରାଗଂ
ପ୍ରସ୍ୱେଦବିନ୍ଦୁବିତତଂ ବଦନଂ ପ୍ରିୟାୟାଃ,
ଅନ୍ତେ ସ୍ମରାମି ରତଖେଦ—ବିଲୋଲନେତ୍ରଂ
ରାହୂପରାଗପରିମୁକ୍ତମିବେନ୍ଦୁବିମ୍ବମ୍ । ୯ ।

ଗୀତ—ଯେତେବେଳେ ଚିନ୍ତଇ ସ୍ୱରୂ କନକପ୍ରତିମା ଜାଗେ
କୁଙ୍କୁମ ପଙ୍କରେ ତନୁ ସୁନ୍ଦର ଦିଶି
ରତି ଅନ୍ତେ ସ୍ୱରୁମୁଖ ଦିଅଇ ପରମ ସୁଖ
ରୁଚିର ଦିଶଇ ସ୍ୱେଦବିନ୍ଦୁ ବିକାଶୀ,
ଶର୍ମ ଭରେ ନେତ୍ର ତରଳ
ଗ୍ରାସି କି ଛାଡିଛି ରାହୁ ଶଶିମଣ୍ଡଳ । ୧୫ ।

---

(୧) ଭୂଥବିସର୍ପିଗନ୍ଧାମ୍ (ଗ)

ଏସନ ଗୂଢ଼ ବଚନ— ଶୁଣି ବୋଲଇ ଦୋସାଧ
ଆରେ ପରଦେଶୀ ଚୋର ବାତୁଳମତ
ପୁଣ ପୁଣ ନୃପସୁତା ନାମ ତୁରେ ନକେ ଧରି
ମରଣରେ ତୋର ଦରେ ନୁହଇ ହିତ
ଚିନ୍ତୁ ହରି କାଟିବ ମୁଣ୍ଡ ।
ଏ ତେବେ ନ ମଲୁ ତୋର ନିର୍ଲଜ୍ଜ ତୁଣ୍ଡ । ୧୭ ।

ଶ୍ଳୋକଃ—ଅଦ୍ୟାପି ତାଂ ନିଧୁବନେ ମଧୁଗନ୍ଧପୂର୍ଣ୍ଣାଂ (୧)
ଲୀଳା (୨) ଧରାଂ କୁଶତନୁଂ ପ୍ରଚଳାୟୁତାକ୍ଷୀମ୍ (୩)
କାଶ୍ମୀରପଙ୍କମୃଗନାଭିକୃତାଙ୍ଗରାଗାଂ
କର୍ପୂରପୂଗପରିପୂର୍ଣ୍ଣମୁଖୀଂ ସ୍ମରାମି । ୧୦ ।

ଗୀତ—ନିଧୁବନ କେଳିକାଳେ ଅଧରମଧୁ ରସରେ
ପୁଣ ପୁଣ ରସନାକୁ ଧ୍ୟାନ କରଇ ।
କୁଙ୍କୁମକସ୍ତୁରୀପଙ୍କେ ଗୁରୁ ତନୁ ଆମୋଦଇ
ପଙ୍କଜତରଳନେତ୍ରେ ମନେ ଗୁହଇ ।
କର୍ପୂର ପୂଗରେ ବାସିତ
ସେ ମୁଖକୁ ଚିନ୍ତା ମୁଁ କରଇ ସତତ । ୧୮ ।

ଶ୍ଳୋକଃ—ଅଦ୍ୟାପି ତତ୍ କନକକୁଣ୍ଡଳଘୃଷ୍ଟମାସ୍ୟଂ (୪)
ତସ୍ୟାଃ (୫) ସ୍ମରାମି ବିପରୀତରତାଭିଯୋଗେ,

---

(୧) ମଧୁ ଦଗ୍ଧଦେହାଂ (ଖ) ମଧୁପାନରକ୍ତାଂ (ଗ)
(୨) ଲୀଳା—ଧରାଂ (ଗ)
(୩) ରତିଲବ୍ଧତାକ୍ଷୀମ୍ (ଖ) ଓ (ଗ)
(୪) ଘୃଷ୍ଟଗଣ୍ଡ (ଗ)
(୫) ମାସ୍ୟ (ଗ)

ଆନ୍ଦୋଳନଶ୍ରମଜଳସ୍ଥ୍ ଫ୍ଟସାନ୍ଦ୍ରବିନ୍ଦୁ—
ମୁକ୍ତାଫଳପ୍ରକରବିଚ୍ଛୁରିତଂ ପ୍ରିୟାୟାଃ । ୧୮ ।

ଗୀତ—ଏବେହେଁ ଚିନ୍ତଇ ମୁହିଁ ବିପରୀତ ରତି କଲେ
ବଦନମଣ୍ଡଳଶୋଭା ପ୍ରିୟାର ମୋର
ତାଙ୍କ ବେନି ଉଜ୍ଜ୍ୱଳ ରତିରସରେ ଚଞ୍ଚଳ
ସମ୍ପୂର୍ଣ୍ଣ ଚନ୍ଦ୍ର ପାଶେ କି ଗୁରୁ ଯୁଗଳ
ମର୍ମେ ସ୍ୱେଦ ବିନ୍ଦୁ ଖସଇ
ବିକଚପଦ୍ମ କି ଯେସନ୍ତେ ମୋତି ବାଢ଼ିଇ । ୧୮ ।

ଶ୍ଳୋକଃ—ଅଦ୍ୟାପି ତନ୍ମନସି ସମ୍ପରିବର୍ତ୍ତତେ ମେ
ରାତ୍ରୌ ମୟି କ୍ଷୁତବତି କ୍ଷିତିପାଳପୁତ୍ର୍ୟା
ଜୀବେତି ମଙ୍ଗଳବଚଃ ପରିହୃତ୍ୟ କୋପାତ୍
କର୍ଣ୍ଣେ କୃତଂ କନକପତ୍ରମନାଳପନ୍ତ୍ୟା । ୧୨ ।

ଗୀତ—ଯେବେ ହେ ପ୍ରାଣପ୍ରିୟାର ସେ କଥା ମାନ ମୋହର
କ୍ଷଣେ ହେଁ ପାସୋରୁ ନାହିଁ ନିଶିକ୍ରୀଡ଼ାର
ମାନ କରି ଥିଲେ ମୋତେ ନକହି ବାଣୀ ଛୁରିତେ
ଦୂର କରିଥିଲି ଅଳଙ୍କାର ତାହାର,
ଛିଙ୍କନ୍ତେ ମୁଁ ନ କହି ବାଣୀ
ତାଙ୍କ ଘେନାଲ କରେ ଚନ୍ଦ୍ରମଣି । ୧୯ ।

ଶ୍ଳୋକଃ—ଅଦ୍ୟାପି ତତ୍ ପ୍ରଣୟଭଙ୍ଗୁରଦୃଷ୍ଟିପାତଂ
ତସ୍ୟାଃ ସ୍ମରାମି ରତବିଭ୍ରମଗାତ୍ରଭଙ୍ଗମ୍,
ବସ୍ତ୍ରାଞ୍ଚଳ ସ୍ଖଳନସଙ୍କୁଚପୟୋଧରାନ୍ତଂ
ଦନ୍ତଚ୍ଛଦଂ ଦଶନଖଣ୍ଡନମଣ୍ଡନଂ ଚ (୨) । ୧୩ ।

---

(୧) ମନନ୍ତରଂ ଚ (ଗ)

ଗୀତ—ପ୍ରେବେ ହେ ଚିନ୍ତଇ ତାହା ସ୍ନେହରଙ୍ଗିମା ନୟନେ
ବନ୍ଦ କରି ମୋରେ ସୁମାମଣି ସୁହାଣି
ରତ୍ନ ଶର୍ମରେ ଲଳିତ ପଦାବଳି ବାଦଳିତ
କୋମଳଶରୀରେ ତା'ର ଶିରୀଷ ଜାଣି
ସବନଟର ଖସି ବସନ,
କୁଚ ଶୋଭନଦାଶନ ହି ମଣ୍ଡନ ।

ଶ୍ଳୋକଃ—ଅଦ୍ୟାପ୍ୟଶୋକକରପଲ୍ଲବରଙ୍ଗସଂ
ମୁକ୍ତାଫଳପ୍ରକରଚୁମ୍ବିତଚୂଚୁକାଗ୍ରମ୍,
ଅନ୍ତଃସ୍ମିତୋଚ୍ଛ୍ଵସିତ (୧) ପାଣ୍ଡୁରଗଣ୍ଡଭିତ୍ତିଂ
ତାଂ ବଲ୍ଲଭାମଲସହଂସଗତିଂ ସ୍ମରାମି । ୧୪ ।

ଗୀତ—ପ୍ରେବେ ହେ ଆଜେ ଦୋସାଧୁ ଚିନ୍ତାକରୁଅଛି ତା'ର
ମଞ୍ଜୁଳ ବଞ୍ଜୁଳ ଶୋଭ କରପଲ୍ଲବ ।
ତା'ର ଅଙ୍ଗ ଲଭି ତନ୍ତୁ— ମୁକ୍ତା କାଞ୍ଚଣ ଶୋଭନ ।
କର ଶରରେ କାମ କ ଜିଣିଲା ଶିବ
ପ୍ରେଣୁ କରି ମର୍ତ୍ତ୍ୟରେ କାତ
ତା ମୁଖ ଚାହିଁଛି କାମଦେବ ସଙ୍ଘାତ । ୨୧ ।
ପ୍ରେବେ ଏହା ଜାଣି ହୃତ ଭପ୍ରେଣ ବେନଶରୀର
କରିଣ ରହିଲା ଯାଇ ରମଣୀ ଉରେ ।
ମୁକ୍ତାମାଳବ୍ୟାଜରେ ସୁରସରିତ ଶରୀରେ
ଧରିଣ ରହିଛି ସେହୁ କାମ ଭୟରେ !
ସ୍ମିତହାସେ ସେ ଚନ୍ଦ୍ରକଳା
ନନ୍ଦୁଅଛି ମଦଗତ ମରାଳଲୀଳା । ୨୨ ।

---

(୧) ସ୍ମରୋଚ୍ଛ୍ଵସିତ (ଗ)

ଶ୍ଳୋକଃ—ଅଦ୍ୟାପି ତତ୍ କୁସୁମରେଣୁପଯୋରୁଦେଶ-(୧)
ନ୍ୟସ୍ତଂ ସ୍ମରାମି ନଖରକ୍ଷତଲକ୍ଷ୍ମ ତସ୍ୟାଃ ।
ଆକୃଷ୍ଟହେମରୁଚିରାମ୍ବରମୁତ୍ଥିତାୟାଃ
ଲଜ୍ଜାନତଂ (୨) କରଧୃତଂ ନ କୃତୋ(୩)ବ୍ରଜନ୍ତ୍ୟାଃ ।୧୫।

ଗୀତ—ପୂଣିରେ ଯେବେ ଦୋସାଧୁ ପ୍ରିୟାର ମୋ ଗୁରୁଉରୁ
କୁସୁମରେଣୁରେ ସ୍ମରୁ ଚିନ୍ତଇ ମୁହିଁ
ନଖ ପଦରେ ମଣ୍ଡଳ କୁସୁମସ୍ୱରେ ପାଠଳ
କରଇ ଚିତ୍ତ ତରଳ ଅନଙ୍ଗ ଦହି
ସେ ମୋ କାମସାଗର-ଭେଳା
ସେ ମୋର ଇଷ୍ଟଦେବତା ରସକୁଶଳା । ୨୩ ।

ଏନେ ହେ ସୁରତରଙ୍ଗେ ତା'ର ମୋର ଯେଉଁ ସଙ୍ଗେ
ପ୍ରଙ୍କାରେ ବଚନ ମୁହିଁ ବୋଇଲି ତା'ରେ
ଶୁଣିଣ ରମଣୀମଣି ମତ୍ତ-କରୀନ୍ଦ୍ର-ଗମନୀ
ଉଠନ୍ତେ ମୁଁ ଟେକାଥିଲ ଧଇଲି ତା'ରେ
ଲଜ୍ଜାଭରେ ନ ତେଜି ବାସ
ନ ଚଳି ରହିଲା ବାମାବର ମୋ ପାଶ । ୨୪ ।

ବୋଲେ ଦୋସାଧୁ ବଚନ ତୋହ୍ମ ନାହିଁ ମୃତ୍ତଜ୍ଞାନ
ଯେତେ ହେଁ କହିଲେ ତୁ ରେ ବୁଝିଲୁ ନାହିଁ ।

---

(୧) କନକରେଣୁ ଘନୋରୁଦେଶେ (ଗ)
(୨) ଲଜ୍ଜାବଣାତୁ (ଗ)
(୩) ତତୋ (ଗ)

ସୁନ୍ଦର ପରମାନନ୍ଦ     କାଟିବ ତୋହର ବନ୍ଧ
ସ୍ୱର୍ଗ ସ୍ଥଳର ନାମ ତୁରେ ଧରୁ କମ୍ପାଇଁ
ଦଣ୍ଡିବେ ନୃପତିକେଶରୀ
ପୁଣି ପୃଥିବୀ ନିପୁ ରୁରେ ତା'ର କୁମାରୀ । ୨୪ ।

ଶ୍ଳୋକଃ—ଅଦ୍ୟାପି ତାଂ ବଧୂତକଜ୍ଜଲଲୋଲନେତ୍ରାଂ
ପୃଥ୍ୱୀଂ ପ୍ରଭୁତକୁସୁମାକୁଳକେଶପାଶାମ୍ ।
ସିନ୍ଦୂର—ସଙ୍କୁଳିତ ମୌକ୍ତିକହାରଦଣ୍ଡ-(୧)
ମାବଦ୍ଧହେମକଣ୍ଠିକାଂ ରହସି ସ୍ମରାମି । ୧୬ ।

ଗୀତ—ପୁଣି ହିଁ ଶୁଣରେ ଭାଇ     ତା ନେତ୍ର ଶୋଭା ନ କହି
ମସୃଣ କଜ୍ଜଳ-ପଙ୍କେ ଦିଶେ ଶୋଭନ
ବାଧାତା ଯେତେ କୁସୁମ     ଅବଶରେ କଲ ଭିନ୍ନ
ତା'ର କବରୀମଣ୍ଡନେ କରି ଯତନ
ସେ ମୋହର ପରମାନନ୍ଦ
ଚିନ୍ତାକୁ ଛେଦସି, ଭାଇ ! ପ୍ରେ ମୋର କନ୍ଦ । ୨୬ ।

ସେ ଶୋଭା କହି ନୁହଇ     ପ୍ରିୟାର ମୋ ଦନ୍ତପନ୍ତି
ମାଣିକ୍ୟ ସମ୍ପୁଟେ ମୋତି ଥିଲେ ଯେସନ ?
କଣ୍ଠୀର କ୍ଷୁଦ୍ର କଙ୍କିଣୀ     ରତିରଙ୍ଗେ କରେ ଧ୍ୱନି
ସନ୍ତତେ ମୋ ମନ ତାହା କରଇ ଧ୍ୟାନ
ତାକୁ ମୁହିଁ ସେବିଛି ଯହୁଁ
ତୋହର ହସ୍ତରେ ମୃତ୍ୟୁ ହୋଇବ କାହୁଁ । ୨୭ ।

---

(୧) ଦନ୍ତକାନ୍ତ (ଗ)

ଶ୍ଳୋକ:—ଅଦ୍ୟାପି ତାଂ ଗଳିତବନ୍ଧନକେଶପାଶାଂ
ସ୍ରସ୍ତସ୍ରଜଂ ସ୍ମିତସୁଧାମଧୁରାଧରୋଷ୍ଠୀମ୍
ପୀନୋନ୍ନତସ୍ତନଯୁଗୋପରି ଚାରୁଚୁମ୍ବ—
ନ୍ମୁକ୍ତାବଳୀଂ ରହସି ଲୋଲଦୃଶାଂ ସ୍ମରାମି । ୨୭ ।

ଗୀତ—ଏବେବେ ହେ ତାହାର ମୁହିଁ ଚିନ୍ତୁଅଛି ଅନୁବ୍ରତେ
ଅନଙ୍ଗ କେଳରେ ତା ଗଳିତ କୁନ୍ତଳ ।
ବିପୁଳ କୁସୁମଦାମ ଖସିଣ ଦିଶେ ସୁସମ
ଯେସନ୍ତେ ନବ ଘନେ ବିଦ୍ୟୁଲ୍ଲତା ମଞ୍ଜୁଳ ।
ସ୍ମିତ ସୁଧାରସେ ମଧୁର
ପ୍ରିୟାର ମୋ ଶୋଭା ଦିଶେ ଅଧ ଅଧର । ୨୮ ।

ବର୍ତ୍ତୁଳଉନ୍ନତସ୍ତନୀ ତିନି ଜଗତ ମୋହିନୀ
ମଧୁର କୋକିଳବାଣୀ ଏଣୀନୟନୀ
ଚଞ୍ଚଳ ଚାରୁକଟାକ୍ଷା ସେହୁ ରତିରସେ ଦକ୍ଷା
ସେ ମୋହର ଅନୁବ୍ରତେ କାମଦାୟିନୀ
ଉରେ ମୋତିହାର ଶୋଭିତ
ହେମଗିରି ଶିରେ ଯେହ୍ନେ ସୁରସରିତ । ୨୯ ।

କାଳିନ୍ଦୀ ତଟ ବିଟପୀ— ତଳରେ ବିଜେ ମୁରାରି
ରାଧା ଆଲିଙ୍ଗନେ ଦିଶେ ଅତିରୁଚିର
ଗୋପି (?) କାଦମ୍ବ କଦମ୍ବ ଘେନିଣ ନତ୍ୟେ ଆନନ୍ଦ
ବୃନ୍ଦାବନେ କରେ ନାନା ରଙ୍ଗେ ବିହାର ।
ସେ ରୂପକୁ ଚିନ୍ତୁ ସନ୍ତତ
ନୃପଧନଞ୍ଜୟ ଭଞ୍ଜ ରଚିଲେ ଏ ଗୀତ । ୩୦ ।

# ନବମ ଛାନ୍ଦ

## ରାଗ—ଚିନ୍ତାଦେଶାକ୍ଷ

ଶ୍ଳୋକଃ—ଅଦ୍ୟାପି ତାଂ ଧବଳବେଶ୍ମନି ରତ୍ନଦୀପ
ମାଳାମୟୂଖପଟଳୈ ର୍ଦଳିତାନ୍ଧକାରେ ।
ପ୍ରାପ୍ତୋଦ୍ୟମେ ରହସି ସମ୍ମୁଖଦର୍ଶନାର୍ଥଂ ।
ଲଜ୍ଜାଭୟାର୍ତ୍ତନୟନାମନୁଚିନ୍ତୟାମି ।୧।

ଗୀତ—ଏଥୁ ଅନନ୍ତରେ ହସି ବୋଲେ ଦୋସାଧୁ
ଜାଣିଲ ରେ ସ୍ପଷ୍ଟ ତୁହି ଅତ ଅସାଧୁ । ୧ ।
ଜଳନ୍ତା ଅନଳେ କକେ ଦେଉଛରେ ଝାସ
ମନ୍ତେ ନାଶ ଗଲୁ ଭଜ ଜଗନ୍ନିବାସ । ୨ ।
କପାଇଁ ବୋଇଲୁ ଭଜ ଜଗନ୍ନିବାସ
ମୋ ଜଗନ୍ନିବାସ ଇଚ୍ଛା ମୁଁ ତାର ଦାସ । ୩ ।
ସଉଧ ବନେ ରତନ ଦୀପ କିରଣ ।
ତମିର ଖଣ୍ଡନେ ସେ ଯେ ଅନ୍ତରଞ୍ଜନ । ୪ ।
ତହିଁରେ ଚିନ୍ତୁଛି ତାର ସେ ଶ୍ରବ ଲୀଳା
ରତ କ୍ରୀଡ଼ାରେ ଯେ ? ଯାହା କଲା ସୁଶୀଳା । ୫ ।
ଅଙ୍ଗ ବିଲୋକନେ ରମା ଲଜ୍ଜିତ ହୋଇ
ମୋର ଅଙ୍ଗ ଲୀନ ହେଲା ପଙ୍କଜମୁହୀ । ୬ ।

ଶ୍ଳୋକଃ—ଅଦ୍ୟାପି ତଦ୍ବିରହ ବହ୍ନିନିପୀଡ଼ିତାଙ୍ଗୀଂ
ତନ୍ୱୀଂ କୁରଙ୍ଗନୟନାଂ ସୁରତୈକପାତ୍ରୀମ୍ ।

ନାନା ବିଚିତ୍ରକୃତମଣ୍ଡନମଣ୍ଡିତାଙ୍ଗୀଂ (୧)
ତାଂ ରାଜହଂସଗମନାଂ ରହସି (୨) ସ୍ମରାମି । ୨ ।
**ଗୀତ**—ପୁଣି ଚିନ୍ତୁଅଛି ଯେବେ ପ୍ରାଣବଲ୍ଲଭୀ
ବିରହ ଅନଳେ ତାପ ଥିବ ସେ ଲଭି । ୭ ।
କୁରଙ୍ଗ ଗୁରୁ ନୟନ କରି ବିରଂଗ
ପୁଣ ପୁଣ ଚିନ୍ତୁଥିବ ମୋ ଅଙ୍ଗ ସଂଗ ।
ଏକା ସେ ମୋ ସୁରତର ରସନିଧାନ
କୃତ କରି ଥାଇ ସେ ବିଚିତ୍ରମଣ୍ଡନ । ୯ ।
ମତ୍ତହଂସ ନିନ୍ଦଇ ଗମନଗୁରୁଣୀ
ମୋର ଜୀବର ଜୀବନ ନୃପକୁମାରୀ । ୧୦ ।
କୁସୁମଶରର ସେହୁ କେଳିମନ୍ଦିର
କିବା ସେ ଅନଂଗ ଜୟକେତୁ ରୁଚିର । ୧୧ ।
ଭୃଂଗ ବର୍ତ୍ତୁଳ ସଘନ ଉରଜ ବେନି ।
ମୋ ନେତ୍ର ସମ୍ପତ୍ତି କଲା ନୀରଜାନନୀ । ୧୨ ।
ତାରତର ମୋତିଦାମେ କଣ୍ଠରଞ୍ଜନ
ଯେବେ ହେ ଦୋଷାଧୁ ତାହା କରୁଛି ଧ୍ୟାନ । ୧୩ ।
**ଶ୍ଳୋକଃ**—ଅଦ୍ୟାପି ତାଂ ବିହସିତାଂ କୁଚଭାରନମ୍ରାଂ
ମୁକ୍ତାକଲାପଧବଲୀକୃତ-କଣ୍ଠମାଳାମ୍ (୩)
ତତ୍କେଳିମନ୍ଦିରଗତାଂ (୪) କୁସୁମାୟୁଧସ୍ୟ—
କାନ୍ତାଂ ସ୍ମରାମି ରୁଚିରୋଜ୍ଜ୍ୱଲପୁଷ୍ପକେତୁମ୍ (୫) ୩

(୧) ମାବଦ୍ଧନ୍ତୀଂ (ଗ) (୨) ସୁଦତୀଂ (ଗ)
(୩) ଧବଳୀକୃତକଣ୍ଠମାଳାମ୍ (ଗ) (୪) ତତ୍ର କେଳିମନ୍ଦିର-
ଗିରୌ (ଗ) (୫) ଧୂମକେତୁମ୍ (ଖ)

ଗୀତ—ଯେବେ ହେ ଚିନ୍ତୁଛି ମୋର ପ୍ରିୟାଶ୍ରୀମୁଖ
ଈଷିତ ହସେ ଯେ ଖଣ୍ଡେ ମଦନଦୁଃଖ । ୧୪ ।
ବହୁତ ଗୁହ୍ନୁ କହିଲେ ଯେହୁ ମୁଖରେ
କହଇ ପ୍ରେମମାଧୁରୀ ଅତି ରୁଚିରେ । ୧୫ ।
ଶୃଙ୍ଗାର ସମୟରେ ନେତ୍ର ଘୃମିତ ତାର
ଶିଥିଳ ବସନ କେଶ ବେଶ ରୁଚିର । ୧୬ ।

ଶ୍ଳୋକଃ—ଅଦ୍ୟାପି ଗୁହ୍ନଶତଦୁର୍ଲ୍ଲଭତୋଚିତାର୍ଥଂ
ତସ୍ୟାଃ ସ୍ମରାମି ସୁରତକ୍ଲମବିହ୍ୱଳାୟାଃ ।
ଅବ୍ୟକ୍ତନିସ୍ୱନିତକାତରକଥ୍ୟମାନ—
ସଙ୍କୀର୍ଣ୍ଣବର୍ଣ୍ଣରୁଚିରଂ ବଦନଂ ପ୍ରିୟାୟାଃ । ୪ ।

ଗୀତ—ଲଳିତ ମଧୁର ଗୁହ୍ନ ଶତବଚନ
ସୁରତ ଦୁଃଖେ ବିକ୍ଳବ ହୋଇଛି ପୁଣ । ୧୭ ।
ଅବ୍ୟକ୍ତ ଅକ୍ଷର ତହିଁ ସ୍ଫୁଟ କାତର
ଯେବେ ଚିନ୍ତେ ମୁଁ ରୁଚିର ହାସ ତାହାର । ୧୮ ।

ଶ୍ଳୋକଃ—ଅଦ୍ୟାପି ତାଂ ସୁରତଘୂର୍ଣ୍ଣନିମୀଳିତାକ୍ଷୀଂ
ସ୍ରସ୍ତାଙ୍ଗଯଷ୍ଟିଗଳିତାଂଶୁକ କେଶପାଶାମ୍ ।
ଶୃଙ୍ଗାରବାରିରୁହକାନନରାଜହଂସୀଂ
ଜନ୍ମାନ୍ତରେଽପି ନିଧନେଽପ୍ୟନୁଚିନ୍ତୟାମି । ୫ ।

ଗୀତ—ସୁରତରସରେ ତାର ନେତ୍ର ଘୃମିତ ।
ରୁଚିର ଅଙ୍ଗଯଷ୍ଟିରୁ ବାସ ଗଳିତ । ୧୯ ।
ଶୃଙ୍ଗାରଜଳପଙ୍କଜ ସେ ରାଜହଂସୀ
ଜନ୍ମ ଅନ୍ତରେ ଲଭିବି ମୁହିଁ ସୁକେଶୀ । ୨୦ ।

ଯେବେ ନଥିଲ ହେବାରୁ କାର୍ଯ୍ୟ ମୋହର
ଶୁଣ ହେ ଦୋପାଧ୍ୟ ବେଗେ ସମ୍ପୂର୍ଣ୍ଣ ହୁର । ୨୧ ।

ଶ୍ଳୋକଃ—ଅଦ୍ୟାପି ତାଂ ପ୍ରଣୟିନୀଂ ମୃଗଶାବକାକ୍ଷୀଂ
ପୀୟୂଷପୂର୍ଣ୍ଣକୁଚକୁମ୍ଭଯୁଗଂ ବହନ୍ତୀମ୍ ।
ପଶ୍ୟାମ୍ୟହଂ ଯଦି ପୁନ ର୍ଦିବସାବସାନେ ।
ସ୍ୱର୍ଗାପବର୍ଗନରରାଜ୍ୟସୁଖଂ ତ୍ୟଜାମି । ୭ ।

ଗୀତ—ରତି କେଳି ରସହାସୀ ମୋ ପ୍ରାଣସଖୀ
ଜନ୍ମାନ୍ତରେ ନଥିଲେ ମୁଁ ଚିନ୍ତିବ ତାହି । ୨୨ ।
କୁରଙ୍ଗନୟନ ଗୁରୁ ପିକବଚନୀ
ପୀୟୂଷପୂରିତ ବେନି କୁଚେ ରଜନୀ । ୨୩ ।
ଯେବେ ଦିବାଶେଷେ ତାର ଦେଖିବି ମୁଖ ।
ସ୍ୱର୍ଗାପବର୍ଗ ସୁଖେଣ ହେବି ବିମୁଖ । ୨୪ ।

ଶ୍ଳୋକଃ—ଅଦ୍ୟାପି ତାଂ କ୍ଷିତିତଳେ ବରକାମିନୀନାଂ
ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାମ୍ ।
ସଂସାର (୧) ନାଟକରସୋତ୍ତମ ପାନପାତ୍ରୀଂ (୨)
କାନ୍ତାଂ ସ୍ମରାମି କୁସୁମାୟୁଧବାଣଖିନ୍ନାମ୍ । ୮ ।

ଗୀତ—ଅବନୀ ମଣ୍ଡଳେ ଯେତେ ଯେତେ ତରୁଣୀ ।
ସର୍ବାଙ୍ଗ ସୁନ୍ଦର ସେ ଯେ ସଖୀ ଅଗ୍ରଣୀ । ୨୫ ।
ଯେତେବେଳେ କରେ କାମ ସୁନ୍ଦରୀ ଲେଖା
ଆଗକରି କାଟଇ ମୋ ପ୍ରେୟାର ରେଖା । ୨୬ ।
ଜଗତ ନାଟକ ରସେ ଅତି ରୁଚିର,
ମଣିମୟ ପାତ୍ରୀ ଇଚ୍ଛା ଯୁବତୀବର ।୨୭।

---

(୧) ଶଙ୍ଗାର (ଗ) (୨) ପାନପାତ୍ରୀ (ଗ)

ଯେବେ ଯେ କୁସୁମେଷୁର ଶରରେ ଖିନ୍ନ
ହୋଇଥିବ ଚିନ୍ତୁଅଛି ମୋର ଜୀବନ ।୨୮।

**ଶ୍ଳୋକଃ**—ଅଦ୍ୟାପି ତାଂ ସ୍ତିମିତବସ୍ତ୍ରମିବାଙ୍ଗଲଗ୍ନାଂ
ପ୍ରୌଢ଼ପ୍ରତାପମଦନାନଳତପ୍ତଦେହାମ୍ ।
ବାଳାମନାଥଶରଣାମନୁକମ୍ପନୀୟାଂ
ପ୍ରାଣାଧିକାଂ କ୍ଷଣମହଂ ନହି ବିସ୍ମରାମି ।୮।

**ଗୀତ**—ଝୀନବାସ ତନ୍ତୁ ଯେହ୍ନେ ଲଗେ ଅଙ୍ଗରେ !
ତେସନେ ସେ ଜଡ଼ିଥାଇ ମୋର ଅଙ୍ଗରେ ।୨୯।
ଯେବେ ସେ ମୋର ବିଚ୍ଛେଦେ ଅନଙ୍ଗ ଦୁଃଖୀ
ଜୀବନ କି ଧରିଥିବ ଚନ୍ଦ୍ରମା ମୁଖୀ ।୩୦।
ଯେବେ ବାଳା ଅବଳା ସେ ତନୁକୋମଳା ।
ଅନାଥ ପରାଧୀ ହୋଇ ଥିବ ସୁଶୀଳା ।୩୧।
ତାର ଦୟାରେ ପବିତ୍ର କରେ ମୋ ଗାତ୍ର
ତେଣୁ ମୋର ଦୟାରସେ ଅଟଇ ପାତ୍ର ।୩୨।

**ଶ୍ଳୋକଃ**—ଅଦ୍ୟାପି ତାଂ ପ୍ରଥମତୋ ବରସୁନ୍ଦରୀଣାଂ
ସ୍ନେହୈକପାତ୍ରଘଟିତାବନିପାଳପୁତ୍ରୀମ୍ ।
ଦାହଜ୍ୱରଂ (୧) ମମ ବିୟୋଗହୁତାଶନାଖ୍ୟଂ (୨)
ସୋଢୁଂ ନ ଶକ୍ୟତ ଇତ ପ୍ରତିଚିନ୍ତୟାମି ।୯।

**ଗୀତ**—ପ୍ରାଣରୁ ଅଧିକ ସେ ମୋ ନବ କିଶୋରୀ
ଅନ୍ୟକ୍ଷଣେ ମନ ମୋ ନ ପାରେ ପାସୋରି ।୩୩।
ଶୃଙ୍ଗାର ଲାବଣ୍ୟ କଳାରସ ଯୋଜନା ।
ବିହି ବିଧାନ କରନ୍ତେ ରମଣୀଗଣ ।୩୪।

---

(୧) ଦ୍ୱଂହୋଜନା (ଗ) (୨) ହୁତାଶନୋତ୍ଥମ୍

ସକଳ ରସେ ସମ୍ପୂର୍ଣ୍ଣ କରି ମୋ ନାରୀ ।
ଅଗକରି ନିର୍ମାଣିଛି ସେ ଲୋକକାରୀ ।୩୫।
ସେ ବିଯୋଗ ହୁତାଶନ ତାପକୁ ଏରର
ବାଧି କେଉଁନ୍ତେ ସହିଥିବ ଚତୁରୀବର ।୩୬।
ଏଥିବେ ହେ ତାହାର ବିନୁ ଏ ମୋର ମନ
ନଇଛଇ ନାନା ବୀଡ଼ା ବେଶ ବିଧାନ । ୩୭ ।

ଶ୍ଳୋକଃ—ଅଦ୍ୟାପି ବିସ୍ମୃତକଥା ବିଦଶାନ୍ ବାହାସୁ
ବୁଦ୍ଧି ର୍ନଗ୍ନନ୍ୟବିଷୟେ (୧) ନ ମହଂ କରେମି ।
ଜାନନ୍ତପି ପ୍ରତି ମୁହୂର୍ତ୍ତି ମିବ ନ୍ତ (୨) କାଲେ
କାନ୍ତେତି ବଲ୍ଲଭତମେତି ମମେତି ଧୀସ୍ୱ । ୧୦ ।

ଗୀତ—ଏଣୁର କହଇ ବହନ ଶୁଣ ହେ ଧୀର
ତୁମ୍ଭେ ହେ ବୋଲ ବିଦଶ ଛାଡ଼ୁ ପାମର । ୩୮ ।
ମୂହିଁକ ନଜାଣେ ସେହି କଥା ସକଳ
କାନ୍ତାର ପୀରତି ମୋର କେବଳ ସାର । ୩୯ ।

ଶ୍ଳୋକଃ—ଅଦ୍ୟାପି ତାଂ ଗମନମିତ୍ୟୁଦିତଂ ମଦାସ୍ୟଂ
ଶ୍ରୁତ୍ୱୈବ ଭୀରୁହରିଣୀମିବ ଚଞ୍ଚଳାକ୍ଷୀମ୍ ।
ବାଚଃସ୍ଖଲଦ୍ ବିଗଳଦଶ୍ରୁଜଲା କୁଳାକ୍ଷୀଂ
ସଚିନ୍ତୟାମି ଗୁରୁଶୋକ (୩) ବିନମ୍ରବକ୍ତ୍ରାମ୍ । ୧୧ ।

ଗୀତ—ଯେବେଣ ଅନାଇଲେ ମୋତେ ଦିଶଇ ସେହି ।
କ କରିବି ଯହୁଁ ନେତ୍ରେ ଅଛଇ ସେହି । ୪୦ ।

---

(୧) ବୁର୍ଦ୍ଧିର୍ବଲାଚଳଭମେ (ଗ) (୨) ସିଦ୍ଧାନ୍ତ (ଗ)
(୩) ଶୋକ (ଗ)

ଜାଣୁଛି ମୁଁ ଯିବ ଏହିକ୍ଷଣି ଜୀବନ ।
କାନ୍ତା ପ୍ରାଣପ୍ରିୟା ବୋଲି କରୁଛି ଧ୍ୟାନ । ୪୧ ।
ଯେବେ ମୋର ଗମନ ବାର୍ତ୍ତା ଶୁଣଇ
ସଭୟ ହରିଣୀ ପ୍ରାୟେ ନେତ୍ର କରଇ । ୪୨ ।
କହିବାକୁ ବଚନ ସେ କରଇ ଯେବେ ।
କମଳନୟନୁ ନୀର ମୁଞ୍ଚଇ ତେବେ । ୪୩
ଗୁରୁ ଶେଷଭରେ ନମ୍ର କରି ବଦନ ।
ତାହା ଏବେ ହୋଇଛି ମୋ ସନ୍ତତ ଧ୍ୟାନ । ୪୪ ।
ଶ୍ଳୋକଃ—ଅଦ୍ୟାପି ତାଂ କ୍ଷଣବିୟୋଗବିଷୋପମେୟାଂ
ସଙ୍ଗେ ପୁନର୍ବହୁତରାମ୍ ମୃତାଭିଷେକାମ୍ ।
ସଞ୍ଜୀବ (୧)ଧାରଣକରୀଂ ମଦନାତଗାହାଂ (୨)
କଂ ବ୍ରହ୍ମ କେଶବହରୈଃ (୩) ସୁଦତୀଂ ସ୍ମରାମି । ୧୨ ।
ଗୀତଃ—ଶୁଣ ଏବେ ଚିନ୍ତୁଛି ତା ଲାବଣ୍ୟ ଅଙ୍ଗ
ମସୃଣ ଚନ୍ଦନ ପଙ୍କେ ଯେହ୍ନୁ ସୁରଙ୍ଗ । ୪୫ ।
କସ୍ତୁରି ପଙ୍କରେ ମିଶି କରେ ଆମୋଦ
କ୍ଷଣରେ ନାଶଇ ମୋର ଅଙ୍ଗଖେଦ । ୪୬ ।
ସମ୍ମୁଖେ ଅଞ୍ଜନ ବେନି ରଖି ଚୁମ୍ବନ ।
ତେସନ ପ୍ରାୟେକ ମୋର ପ୍ରିୟା ଆନନ । ୪୭
ତାହା କରୁଅଛି କ୍ଷଣେ କ୍ଷଣେ ମୁଁ ଧ୍ୟାନ ।
ଏବେ ନାଅ ଦୋଷାଧୂରେ ମୋର ଜୀବନ । ୪୮ ।
ଶ୍ଳୋକଃ—ଅଦ୍ୟାପି ତତ୍ ସୁଲଳିତଂ ସ୍ମରଣଂ (୪) ମୟାପି
ଦୃଷ୍ଟଂ ନ ତତ୍ (୫) ସଦୃଶଣେ ବଦନଂ କଦାଚିତ୍ ।

(୧) ତାଂଶବ (ଗ) (୨) ମଦନାତପକ୍ଷାଂ (ଗ)
(୩) ଇନ୍ଦ୍ରବୃନ୍ଦ କେଶନବନ୍ଧାଂ (ଗ)
(୪) ତାଂ ସୁକସୁଣଂ ଯତତ (ଗ) (୫) ସତ୍ତ୍ୱ (ଗ)

ତନ୍ନାନ୍ତନର୍ଜିତରଂ-ଦ୍ବିଜଗ୍ରଜଚିହ୍ନଂ (୧)
କାନ୍ତଂ ନହନ୍ତ ବାବମର୍ଥବତାଂ ଗୁଣେନ (୨) । ୧୩ ।

ଗୀତ—ତା ବିଚ୍ଛେଦ କ୍ଷଣେ ଯୁଗ ହୁଅଇ ମୋର
ତା ସଙ୍ଗତ ରହି ହୁଏ ସୁଧା ଆକାର । ୪ ।
ସେ ମୋର ଜୀବ ଜୀବନେ ଅଟେ କାରେଣୀ
ସେ ମୋର କାମତପନ ତାପବାରେଣୀ । ୪୦ ।
ତା ବିନୁ ମୋର ସ୍ୱୟମ୍ଭୁ ଶମ୍ଭୁ ହୁରି
କାମ ଦୁସ୍ତର ସାଗରୁ କରିବେ ପାରି । ୫୧ ।
ଏବେ ହେ ପଙ୍କଜଗ୍ୱରୁ ପ୍ରିୟାବଦନ
ନାହିଁ ନାହିଁ ତାର ସମ ମର୍ତ୍ତ୍ୟ ଭୁବନ । ୫୨ ।
ଯାର କ ନ୍ତରେ ନର୍ଜିତ ଅମିୟକର
ସେ ସୁଧାକରରେ ଯହୁଁ ସ୍ୱର୍ଗ ରୁଚିର । ୫୩ ।
ତାହାକୁ କେତେ ନନ୍ଦିଲା ଯେବଣମୁଖ
ତାବିନୁ ମୋହର କାହିଁ ଲଭେ କ ସୁଖ । ୫୪ ।
ଗୋପୀ କଦମ୍ବ ବିହାରୀ ମୁରଲୀଧାରୀ ।
ଅଘ ତମିର ତପନ ଶାରଙ୍ଗଧାରୀ । ୫୫ ।
ସେ କୃଷ୍ଣ ବେନ ଚରଣ ପଙ୍କଜ ଚିନ୍ତ ।
ଏ ଗୀତ ରଚିଲେ ଧନଞ୍ଜୟ ନୃପତ । ୫୬ ।

---

(୧) ସୌନ୍ଦର୍ଯ୍ୟ ନର୍ଜିତରଦ୍ଧିଦ୍ୱିଜଗଜକାନ୍ତଂ (ଗ)
(୨) କାନ୍ତା ମିହାଣ୍ଡ ବିମଳଦ୍ଧ ମହାଗୁଣେନ (ଗ)

# ଦଶମ ଛାନ୍ଦ

## ରାଗ—ଚନ୍ଦ୍ରଭୈରବ

**ଶ୍ଳୋକଃ**—ଅଦ୍ୟାପି ବାସଗୃହତୋ ମୟି ନୀୟମାନେ
ଦୁର୍ବାରଭୀଷଣକରୈଃ ଯମଦୂତଵର୍ଗୈଃ ।
କିଂ କିଂ ତୟା ବହୁବିଧଂ ନକୃତଂ ମଦେନ (୧)
ବକ୍ତୁଂନ ପାର୍ଯ୍ୟତ ଇତ ବ୍ୟଥତେ ମନୋ ମେ ।୧।

**ଗୀତ**— ଏଥୁ ଅନ୍ତରେ ଦୋସାଧୁ ଭଣି
ଏବେ ଶୁଣ ଗୃହ ମୋର ବାଣୀ
ସ୍ତ୍ରିଙ୍କ ଘର ନାମ ଜସ୍ତୁ ତୁ ନଜାଣି
କି କେ ନ ବୋଲୁଛୁ ଚକପାଣି
ରେ କୁମର ।୧।
ତୁ ରେ ହେଉଛୁ ଜାଣି ନଧନ,
ଏବେ ସୁମର ତୁ ନାରାୟଣ
ପୁଣ ପୁଣ ଇଚ୍ଛାବତୀ ନାମ ଧରୁ
ତୋର ଜାଣିଲି ମୁଁ ମୃତ୍ୟୁପଣ
ରେ କୁମର ।୨।
ଶୁଣି ଏସନ ଦୋସାଧୁ ବାଣୀ
ଗୃହ ଇଚ୍ଛା ଗୁଣ ହୃଦେ ଗୁଣି
ବୋଲଇ, ଦୋସାଧୁ ତୁ ଏଡ଼େ ଅଜ୍ଞାନ
କି କେ କହିଲୁ ଏସନ ବାଣୀ
ରେ ଦୋସାଧୁ ।୩।

---

(୧) ମଦର୍ଥେ (ଗ)

ନୃପ ତଗର ବଡ଼ ସୁଲକ୍ଷଣ
ଦ୍ଧରେ ଘେନିଣ ତୀକ୍ଷ୍ଣ କୃପାଣ
ପ୍ରିୟା ଦ୍ଧେଳିପୂରୁ ମୋତେ ସେ ଅଣିଲେ
ମୁହିଁ କରନ୍ତେଣ ଆଲିଙ୍ଗନ
ରେ ଦୋସାଧୁ ।୮।

ସେହୁ ସମୟେ ଚନ୍ଦ୍ର ବଦନା
କ କ ନ କଲା ମୀନଲୋଚନା
ସେ ଭାବ ବଚନେ କହି ନ ପାରୁଛି
ତେଣୁ ଦହୁଛି ହୃଦ ବେଦନା
ରେ ଦୋସାଧୁ ।୯।

ଶ୍ଳୋକଃ—ଅଦ୍ୟାପି ମେ ନଶିଦନଂ (୧) ହୃଦୟଂ ଦୁନୋତି
ପୂର୍ଣ୍ଣେନ୍ଦୁ ସୁନ୍ଦରମୁଖଂ ମମ ବଲ୍ଲଭାୟାଃ ।
ଲାବଣ୍ୟ ନିର୍ଜିତ ରତି କ୍ଷତ କାମଦର୍ପଃ
ଭୂୟଃପୁନଃ (୨) ପ୍ରତି ମୁହୁ (୩) ର୍ନ ବିଲୋକ୍ୟତେ ଯତ୍ ।୨

ଗୀତ—ଏହି ସମୟେ ତାର ବଦନ
ଯତେ ଦେଖିବ ମୋର ନୟନ,
ଜୀବର ଜୀବନ ସେ ମୋ ପ୍ରାଣଧନ
ଇଚ୍ଛାବତୀ ମୋ ହୃଦୟ ଭୂଷଣ
ହେ ଦୋସାଧୁ ।

(୧) ଦବା (ଗ) (୨) ପୁରଃ (ଗ) (୩) ପଦଂ (ଗ)

ଏବେ ସ୍ୱଦବ- ବସ ମୋହର
ହୃଦ ହେଉଛି ଅତ କାତର
ମଦନ ଦର୍ପଣ ଗଞ୍ଜଇ ଯେ ମୁଖ
ତାହା ନ ଦେଖିଲି ମୋ ପ୍ରିୟାର
ହେ ଦୋସାଧୁ ।୭।

ଛଣେ ଥିବାକୁ ଜୀବନ ମୋର
ତେଣୁ ନ କରଇ ମୁଁ ବିଗ୍ନର
ଯାହାକୁ ହୃଦରୁ ଦଣ୍ଡେ ନ ତେଜଇ
ଏବେ ହୋଇଲା ସେ ଚିନ୍ତା ପର
ରେ ଦୋସାଧୁ ।୮।

ଶ୍ଳୋକଃ—ଅଦ୍ୟାପି ତାମବହିତାଂହ୍ୟତେ ମନସା ବଳେନ
ସଞ୍ଚିନ୍ତୟାମି ସୁଦତୀଂ ମମ ଜୀବିତାଶାମ୍ ।
ନାନ୍ୟୋପଭୁକ୍ତ ନବଯୌବନ ଭାରସାରଂ
ଜନ୍ମାନ୍ତରେଽପି ମମ ସୈବ ଗତିର୍ଯଥା ସ୍ୟାତ୍ ।୬।

ଗୀତ—ଏବେ ବଳେ ଏ ମୋହର ମନ
ପ୍ରିୟ ରୂପ କରୁଅଛି ଧ୍ୟାନ
ମୋର ସେ ଜୀବନ ଈଶ୍ୱରୀ ନାଗରୀ
ତାକୁ ଭାବି ନମରଇ ଦାନ
ରେ ଦୋସାଧୁ ।୯।

ନୋହିଥିବ ଆନେ ଉପଭୋଗ ମୋର
ପ୍ରିୟ ସ୍ୱରୁ ଭରୁ ସ୍ତନ

ଜନ୍ମ ଜନ୍ମାନ୍ତରେ ସେ ମୋ ଗତି ହେବ,
ଏହା କରିବେକ ଶିବ୍ୱୀରଙ୍ଗ
ହେ ଦୋସାଧୁ ।୧୦।

ଶ୍ଳୋକଃ—ଅଦ୍ୟାପି ତଦ୍‌ବଦନପଙ୍କଜଗନ୍ଧଲୁବ୍‌ଧ-
ଭ୍ରାମ୍ୟଦ୍ଦ୍ୱିରେଫଚୟଚୁମ୍ବିତଗଣ୍ଡଦେଶାମ୍ ।
ଲୀଳାବଧୂତକରପଲ୍ଲବକଙ୍କଣାନାଂ
କ୍ୱାଣୋ ବିଲୁମ୍ପତି (୧) ମନଃ ସୁକୃତଂ ମଦୀୟମ୍ ।୪।

ଗୀତ— ଏକେ ଉପବନେ ବରବାଳା
କରୁଥିଲା ମୋତେ ଘେନି ଲୀଳା
ମୁଖପଦ୍ମରଭେ ଭୃଙ୍ଗେ ଗୋଡ଼ାବନ୍ତେ
ମୋର ଅଙ୍ଗେ ମିଳିଲା ଅବଳା
ହେ ଦୋସାଧୁ । ୧୧ ।
ତା'ର ସେ କେଳି କରୁଛି ଧ୍ୟାନ
ଯାଉ ନ ଯାଇ ଅଛି ଜୀବନ,
ନିବାରନ୍ତେ କର କଙ୍କଣ ଧ୍ୱନି ତା
ମୋ'ର ମନ କରୁଛି ଉଚ୍ଛନ୍ନ
ହେ ଦୋସାଧୁ । ୧୨ ।

ଶ୍ଳୋକଃ—ଅଦ୍ୟାପି ସା ନଖପଦଂ ସ୍ତନମଣ୍ଡଲେଽପି
ଦତ୍ତଂ ମୟା ସ୍ମ ମଧୁପାନବିମୋହିତେନ ।
ତଦ୍‌ଭିନ୍ନରୋମପୁଲକୈର୍ବହୁଭିଃ ସମନ୍ତା
ଜ୍ଜାଗର୍ତ୍ତି ରକ୍ଷୟତି ଲୋକୟତି ପ୍ରଯତ୍ନାତ୍ (୨) । ୫ ।

---

(୧) ବିମୂର୍ଚ୍ଛତି (ଗ)
(୨) ରକ୍ଷତି ବିଲୋକୟତି ସୁବର୍ଣ୍ଣ (ଗ)

ଗୀତ— ଯେତେକ ଦିନେ ପଲଙ୍କେ ଶୟନ
କରିଥିଲୁ ଆମ୍ଭେ ଦେନି ଜନ
ମଧୁପାନ-ମତ୍ତେ ତା କୁଚମଣ୍ଡଳ
ଚିହ୍ନ କରନ୍ତେ କଲି ଲେଖନ
ରେ ଦୋସାଧୁ । ୧୩ ।
ସେହୁ ସ୍ମୃତିସ୍ମାମାନଙ୍କ ବର
ଫୁଲଶରେ ଜାଳିଲା ଶରୀର
ଅନୁରାଗଭରେ ମତେ ଅନାଉଛି,
ନେଇ ନୋହି (ଛି ?) ସୁଖ ଦୁଃଖର
ରେ ଦୋସାଧୁ । ୧୪ ।

ଶ୍ଳୋକଃ—ଅଦ୍ୟାପି କୋପବିମୁଖୀକୃତଗନ୍ତୁକାମା
ନୋକ୍ତଂ ବଚଃ ପ୍ରତିଦଦାତି ଯଦୈବ ବକ୍ତ୍ରମ୍ ।
ଚୁମ୍ବାମି, ରୋଦମି, ଭୃଶଂ ପତିତୋଽସ୍ମି ପାଦେ
ଦାସ ସ୍ତବ ପ୍ରିୟତମେ ! ଭଜ ସସ୍ମରାମି । ୬ ।

ଗୀତ— ସେ ଯେ କେଳିକଳା ରସେ ପୂରି
ପୂର୍ଣ୍ଣକାମେ ବିମୁଖ ତରୁଣୀ
କହି ନ କହି ସେ ମୋରେ ମାନଭରେ
ସେ ଯେ ବସିଲା ବରରମଣୀ
ରେ ଦୋସାଧୁ । ୧୫ ।
ସେ ଯେ ନୟନ-କମଳୁ ନୀର,
ବାମା ତେଜିଲା ଯହୁଁ ସତ୍ବର
ମୁଁ ତାରେ ବିନୟ ବଚନ ଯେତେକ
କହିଅଛି ଶୁଣ ମୋ ଉତ୍ତର
ରେ ଦୋସାଧୁ । ୧୬ ।

ତୋର ଦାସ ମୁଁ ଚତୁର୍ଥୀମଣି
ମୁଖେ ଚୁମ୍ବନ ଦାଅ ରମଣି
ଏବେ ବୋଲି ତା'ର ଚରଣେ ପ୍ରଣାମ
କରି ଦେବାଇଲି ରଖ ସୁବାନ
ରେ ଦୋସାଧୁ । ୧୭

ମୁଁ ଯେ ଏସନ ପ୍ରକାରେ ତାରେ,
ସ୍ତୁତି କଲି ବହୁତ ପ୍ରକାରେ
ଏଥକୁ ସେ ମୋତେ ଯାହା ବୋଲି ଅଛି
ତାହା ଚିନ୍ତୁଛି ଏବେ ଚିତ୍ତରେ
ରେ ଦୋସାଧୁ । ୧୮ ।

ଶ୍ଲୋକଃ—ଅଦ୍ୟାପି ଧାବତି ମନଃ କିମହଂ କରୋମି
ସାର୍ଦ୍ଧଂ ସଖୀଭିରପି ବାସଗୃହେ ପ୍ରିୟାୟାଃ (୧)
କାନ୍ତାଙ୍ଗ ସଙ୍ଗ (୨)-ପରିହାସ-ବିଚିତ୍ର ନୃତ୍ୟ-
କ୍ରୀଡ଼ାଭିରାମ ଇହ ଯାତୁ ମଦୀୟକାଳଃ । ୭ ।

ଗୀତ— ଧନ୍ୟ ଅଟଇ ତା କେଳିଘର
ଦିବ୍ୟ ମଣିଗଣେ ମନୋହର
× × ହରି ଅଗୁରୁ ଧୂପରେ
ସନ୍ତରକେ ଭ୍ରମନ୍ତି ଭ୍ରମର
ରେ ଦୋସାଧୁ । ୧୯ ।

---

(୧) ସୁତାକେ (ଗ)
(୨) କାନ୍ତା ସୁଗୀତ (କ)

ସଖୀଗଣ ନୃତ୍ୟ ଗୀତ ରସେ
ତହିଁ ଥିବ ବରବାଳା ପାଶେ
ଏସନ ଚିନ୍ତଣ ମୋ ମନ ଅଥିର
ନ ରସଇ ତ କେବଣ ରସେ,
ରେ ଦୋସାଧୁ । ୨୦ ।

ଶ୍ଳୋକଃ—ଅଦ୍ୟାପି ତାଂ ନ ଖଲୁ ବେଦ୍ମି କିମୀଶପତ୍ନୀ
ଶାପଂଗତା ସୁରପତେ ରଥ କୃଷ୍ଣଲକ୍ଷ୍ମୀଃ ।
ଧାତା ଚ କିଂ ନୁ ଜଗତଃ ପରିମୋହନାୟ
ସା ନିର୍ମିତା ଯୁବତିରତ୍ନ(୧) ଦିଦୃକ୍ଷୟା ବା । ୮ ।

ଗୀତ— ଏବେ ମୋ ମନେ ଜାଣି ନୁହଇ
ସେ କି ସୁନ୍ଦର ସ୍ତ୍ରୀ ଅଟଇ
କି ସେ ଶମ୍ଭୁ ସୁର- ପତିର ରମଣୀ
କିମ୍ବା କୃଷ୍ଣର ପ୍ରିୟା ହୁଅଇ
ରେ ଦୋସାଧୁ । ୨୧ ।

କିମ୍ବା ଯୁବତୀ-ମାନଙ୍କ ଧ୍ୱଜା
ହୋଇ ଜନ୍ମିଲା ଲୋକ-ତନୁଜା
କିମ୍ବା ତ୍ରିପୁର- ମୋହନ ନିମନ୍ତେ
ଧାତା ଅବନୀରେ କଲା ସୃଜା
ରେ ଦୋସାଧୁ । ୨୨ ।

ଶ୍ଳୋକଃ—ଅଦ୍ୟାପି ତାଂ ଜଗତି ବର୍ଣ୍ଣୟିତୁଂ ନ କଶ୍ଚିତ୍
ଶକ୍ନୋତ୍ୟଦୃଷ୍ଟସଦୃଶୀଂ ଚ ପରିଗ୍ରହଂ ମେ (୨) ।
ଦୃଷ୍ଟଂ ତୟୋଃ ସଦୃଶୟୋଃ ଖଲୁ ଯେନ ରୂପଂ
ଶକ୍ତୋ ଭବେଦ୍ ଯଦି ସ ଏବ ନରୋ(୩)ନ ଚାନ୍ୟଃ ।୯।

---

(୧) ସ୍ବର୍ଣ୍ଣାଙ୍ଗନା ଯୁବଜନସ୍ୟ (କ)
(୨) ସ୍ମର ମୋହନାୟ (କ) (୩) ସ ଚାନ୍ୟ ବର୍ଣ୍ଣୟିତୁମ୍ (କ)

ଗୀତ— ତା'ର ପ୍ରତି ଅଙ୍ଗର ମାଧୁର୍ଯ୍ୟ
ଦେଖି ଧରିବ କେହୁ ଧଇର୍ଯ୍ୟ
ବଚନେ ଅବା ତା ବର୍ଣ୍ଣିବ ବୃଥା ତା
ଯେବେ ନୋହିବ ଦେଖି ଅଧୈର୍ଯ୍ୟ
ରେ ଦୋସାଧୁ । ୨୩ ।

ଯେତୁ ତାହାର ଲାବଣ୍ୟ ରୂପ
ଯେଣୁ ଅନଙ୍ଗର ମୋହକୂପ
ଯେହୁ ଦେଖିଥିବ ବର୍ଣ୍ଣାଇ ପାରିବ
କହି ନୋହିବ ତାହା ସ୍ୱରୂପ
ରେ ଦୋସାଧୁ । ୨୪ ।

ଶ୍ଳୋକଃ—ଅଦ୍ୟାପି ତନ୍ନୟନ-କଜ୍ଜଳମୁଜ୍ଜ୍ୱଳାସ୍ୟଂ (୧)
ଭ୍ରାନ୍ତ (୨) କର୍ଣ୍ଣଯୁଗଳଂ ପରିହାସହେତୋଃ ।
ପଶ୍ୟେ ତବାମ୍ବନ ନବୀନପୟୋଧରାଭ୍ୟାଂ (୩)
କ୍ଷୀଣଂ ବପୁର୍ଯଦ୍ୱା ନ ପଶ୍ୟତ, ମେ ନ ଦୋଷଃ ।୧୦।

ଗୀତ— ଏବେ ଚିନ୍ତଇ ବାଳା ନୟନ
ଯହିଁ ଶୋଭିଛି ଗୁରୁ ଅଞ୍ଜନ
ହାସ ହେତୁରେ ମୋ ଗଣ୍ଡରେ ଲଗାଇ
ତାର ସେ ଲୀଳା କରୁଛି ଧ୍ୟାନ
ରେ ଦୋସାଧୁ । ୨୫ ।

---

(୧) ମଞ୍ଜୁଳଷ୍ଠଃ (କ) (୨) ବସ୍ତାର (ଖ)
(୩) ପଶ୍ୟାମି ବଣ୍ଡିକ ସୂଦୀନପଟପ୍ରାନ୍ତର୍ଣ୍ଣୀଂ (ଖ)

ପୁଣି ଚିନ୍ତୁଛି ତା ପୟୋଧର
ଶ୍ୟାମ ମୁଖରେ ଯେ ମନୋହର
ତାହା ଚିନ୍ତୁ ଚିନ୍ତୁ ଜୀବ ଯେବେ ଯିବ
କସ ଦୋଷ ହୋଇବ ତାହାର
ରେ ଦୋସାଧ୍ । ୨୬ ।

ଶ୍ଳୋକଃ—ଅଦ୍ୟାପି ନିର୍ମଳ-ଶରଚ୍ଛଶିଗୌରକାନ୍ତି-
ଶ୍ଚେତୋ ମୁନେରପି ହରେତ୍ କମୁତାସ୍ୟ ଧାୟ୍ୟମ୍ ।
ବକ୍ତ୍ରଂ ସୁଧାମୟମହଂ ଯଦି ତତ୍ ପ୍ରପଦ୍ୟେ (୧)
ଚୁମ୍ବନ୍ ପିବାମ୍ୟବିରତଂ ବ୍ୟଥତେ ମନୋ ମେ ।୧୧।

ଗୀତ— ଯେହ୍ନେ ଶରଦ ଶଶୀ ନିର୍ମଳ
ମୁନିଚିତ୍ତ ତେସନ ଅମଳ
ସେ ଚନ୍ଦ୍ର ସଦୃଶ ମୁ- ଖରେ ବଶ କଲ
କ୍ଷମା ନ କରିବ ମୋତେ ଲେଲ
ରେ ଦୋସାଧୁ । ୨୭ ।

ନିଶା ପ୍ରଭାତେ ସେ ଚନ୍ଦ୍ରମୁଖ
ଯେଣୁ ଚୁମ୍ବନେ ଲଭିଲି ସୁଖ
ତେଣୁ କରି ଏବେ ଯାର ଅବାରତେ
ସେହି ଚିନ୍ତାରେ ଲଭୁଛି ଦୁଃଖ
ରେ ଦୋସାଧୁ । ୨୮ ।

ଶ୍ଳୋକଃ—ଅଦ୍ୟାପି ତତ୍କମଳରେଣୁସୁଗନ୍ଧଗନ୍ଧ
ତତ୍ପ୍ରେମବାରି ମକରଧ୍ୱଜପାତକାରି ।
ପ୍ରାପ୍ନୋମ୍ୟହଂ ଯଦି ପୁନଃ ସୁରତୈକତୀର୍ଥଂ
ପ୍ରାଣାଂସ୍ତ୍ୟଜାମି ନିୟତଂ ତଦବାପ୍ତି ହେତୋଃ । ୧୨ ।

---

(୧) ପ୍ରପଦ୍ୟ (କ)

ଗୀତ— ପଦ୍ମ ରେଣୁ ସୁଗନ୍ଧ ବଦନ
ପ୍ରେମଜଳ ଅନଙ୍ଗ ପାବନ
ସୁର-ତରଙ୍ଗିଣୀ ସେ ମୋର ହୋଇଲା
ତେଣୁ ଜାଣ ସେ ତୀର୍ଥ ସୃଜନ
ରେ ଦୋସାଧୁ । ୨୯ ।

ଯେବେ ନ ପାଇବା ତା ସଙ୍ଗମ
ଶୁଣ କହୁଛି କରି ନିୟମ
ତେଜିବା ଜୀବନ ପରଜନ୍ମେ ତାକୁ
ପାଇବା ମୁଁ ହୋଇଣ ସକାମ
ରେ ଦୋସାଧୁ । ୩୦ ।

ଶ୍ଳୋକଃ—ଅଦ୍ୟାପି ଯା ଜଗତ ସୁନ୍ଦରଲକ୍ଷପୂର୍ଣ୍ଣେ
ଦ୍ୱନ୍ୟୋନ୍ୟମୁତ୍ତମଗୁଣାଧିକସମ୍ପ୍ରସନ୍ନେ । (୧)
ଅନ୍ୟାଭିରପ୍ୟୁପମିତୁଂ ନ ମୟାପି ଶକ୍ୟଂ
ରୂପଂ ତଦୀୟମିତ ମେ ହୃଦୟେ ବିତର୍କଃ (୨) । ୧୬ ।

ଗୀତ— ଜଗତରେ ସୁନ୍ଦରୀ ଯୁବତୀ
କେତେ ନାହାନ୍ତି ଅବା ସୁମତି
ତାଙ୍କ ମଧ୍ୟେ ସର୍ବ ଗୁଣରେ ଅଧିକ
ମୋର ପ୍ରାଣପ୍ରିୟା ଇଚ୍ଛାବତୀ
ରେ ଦୋସାଧୁ । ୩୧ ।

---

(୧) ସ୍ଵପନ୍ନେ (ଗ) (୨) ବାମାଙ୍ଗମେବଣ୍ଣ ଦ୍ୱରେରପି ଦକ୍ଷିଣାଙ୍ଗମ୍ (ଗ)

ଯେତେବେ ଯେବେ ତାହାଙ୍କୁ ପାଇବି
କ୍ଷଣେ ଅନ୍ତରହିଁ ନ କରିବି
ବାମ ଅଙ୍ଗେ ହର        ବହିଛି ପ୍ରିୟାଙ୍କୁ
ମୁଁ ଯେ ଦକ୍ଷିଣ ଅଙ୍ଗେ ବହିବି
ରେ ଦୋସାଧୁ । ୩୨ ।

ଶ୍ଳୋକଃ—ଅଦ୍ୟାପି ସା ମମ ମନସ୍ତଟିନୀ ସଦାସ୍ତେ
ରୋମାଞ୍ଚବୀଚିବିଲସଦ୍-ଚପଳସ୍ତ୍ରଭ୍ରୁବା ।
କାଦମ୍ବକେଶରରୁଚିଃ କ୍ଷତବୀକ୍ଷଣଂ ମାଂ
ଗାତ୍ରକ୍ଲମଂ କଥୟତି ପ୍ରିୟରାଜହଂସୀ । ୨୮ ।

ଗୀତ—  ମୋର ଅଙ୍ଗ କାଣ ତରଙ୍ଗିଣୀ
ସଇବାଳ ଲତିକା ରମଣୀ
ହାସ-କଇରବ        କୁଚ-ଚକ୍ରବାକ
ଭୃରୁ ନୟନ ମୀନରଞ୍ଜନୀ
ରେ ଦୋସାଧୁ । ୩୩ ।
ରାଜମରାଳୀ 'ଇଚ୍ଛା' ସୁନ୍ଦରୀ
କାମକମଳା-ବରବିହାରୀ
ରହ ରହ ଶେଷେ        ଯାହା କରିଅଛି
ତାହା ଚିନ୍ତି କେ ପାରୁ ବିସୋରି
ରେ ଦୋସାଧୁ । ୩୪ ।

ଶ୍ଳୋକଃ—ଅଦ୍ୟାପି ତାଂ ନୃପତିଶେଖର-ରାଜପୁତ୍ରୀଂ
ସମ୍ପୂର୍ଣ୍ଣଯୌବନମଦାଲସଘୂର୍ଣ୍ଣନେତ୍ରୀମ୍ । (୧)

(୧) ଭୁଜଗାଙ୍କମ୍ (ବ)

ଗନ୍ଧର୍ବଯକ୍ଷସୁରକିନ୍ନରନାଗ(୧)କନ୍ୟାଂ
ସ୍ୱର୍ଗାଦହୋ(୨)ନପତିତାମିବ ଚିନ୍ତୟାମି । ୧୫ ।

ଗୀତ— ନୃପତିଲକ-ନନ୍ଦିନୀ ବାଳା,
ପୀନ ଉରଜ ଘୁଞ୍ଚୁକୁନ୍ତଳା
ମଦନ ଅଳସେ ଅଙ୍ଗବିରଙ୍ଗିତ
ସେ ମୋ କଣ୍ଠତଟ ରତ୍ନମାଳା
ରେ ଦୋସାଧୂ । ୩୫ ।
ସେ କି ଅମର-ପୁରମଣ୍ଡନୀ
ଖସି ପଡ଼ିଛି ଆସି ଧରଣୀ
ରତି ରଙ୍ଗେ ମୁହିଁ ମାଗଇ ଯେତେକ
ମୋତେ ହୋଇଥାଇ ଚିନ୍ତାମଣି
ରେ ଦୋସାଧୂ । ୩୬ ।

ଶ୍ଳୋକଃ—ଅଦ୍ୟାପି ତାଂ ନଖବୃଃ କ୍ଷଣ(୩)ବେଦୀମଧ୍ୟା
ମୁକ୍ତାଙ୍କପଲ୍ଲବିତସୁଧାସ୍ତନକୁମ୍ଭଯୁଗ୍ମାମ୍
ନାନାବିଚିତ୍ରକୃତମଣ୍ଡନ ମଣ୍ଡିତାଙ୍ଗୀଂ
ସୁପ୍ତୋତ୍‌ଥିତାଂ ନିଶି ଦିବା ନ ହି ବିସ୍ମରାମି । ୧୬ ।

ଗୀତ— ଏବେ ମୁଁ ଚିନ୍ତଇ ସ୍ୱମାବର
ନାନା ମଣ୍ଡନେ ଶୋଭି ଶରୀର
ନିଜ ନିବିଡ଼ରେ ଶୋଭି ପ ଇବାରେ
ବାଳା ମଧ୍ୟ ବେଦୀ ପରକାର
ରେ ଦୋସାଧୂ । ୩୭ ।

(୧) ସଜ (କ)
(୨) ସାକ୍ଷାଲଭଂ (କ) (୩) ନଖବଳାଙ୍କିତ (କ)

ଉତ୍ତୁଙ୍ଗ ସୁଧା ସମ୍ଭୃତ ସ୍ତନ
କୁମ୍ଭ ଯୁଗଳ କଟିକ୍ରମୀନ
ଶୟନୁ ଭୂଷିତ    ନୟନୁ ମିଳିତ
ମନୁ ମୋ ନୁହଇ ବିସ୍ମରଣ
ରେ ଦୋସାଧୁ । ୩୮ ।

**ଶ୍ଳୋକ**—ଅଦ୍ୟାପି ତାଂ କନକକାନ୍ତିମଦାଲସାଙ୍ଗୀଂ
ବ୍ରୀଡୋତ୍ସୁକାଂ ନିପତିତାମିବ ଚେଷ୍ଟମାନାମ୍ ।
ଅଙ୍ଗାଙ୍ଗସଙ୍ଗପରିଚୁମ୍ବନଜାତ(୧)ମୋହାଂ
ତାଂ ଜୀବ(୨)ନୌଷଧିମିବ ପ୍ରମଦାଂ ସ୍ମରମି । ୧୭ ।

**ଗୀତ**—    ଯେବେ ସେ ରୂପ କରୁଛି ଧ୍ୟାନ
ଜାଣେ ଦଗ୍ଧକ ସୁବର୍ଣ୍ଣ ବର୍ଣ୍ଣ
ମଦନ ଅବଶେ    ଅଳସିତଅଙ୍ଗ
ଜାଣେ ଘୂମିତ ବେନି ନୟନ
ରେ ଦୋସାଧୁ । ୩୯ ।

ଅଙ୍ଗ ଅଙ୍ଗରାଗ ମୋ ପ୍ରିୟାର
ମୋହ କରଇ ଯେ ତନ୍ମୟର
ସେ ମୋର ନୟନ-    ପ୍ରତିମା ସୁନ୍ଦରୀ
ନେଇ ଥିଲେ ମୁଁ ଅନ୍ଧ ଆକାର
ରେ ଦୋସାଧୁ । ୪୦ ।

---

(୧) ଲଗ୍ନ (କ) (୨) ସଞ୍ଜୀବ (ଖ)

**ଶ୍ଳୋକଃ**—ଅଦ୍ୟାପି ତତ୍ ସୁରତକେଳିନିରସ୍ତଯୁଦ୍ଧଂ(୧)—
ବନ୍ଧୋପବନ୍ଧ(୨)ପତନୋତ୍ଥିତ ଶୂନ୍ୟହସ୍ତମ୍ ।
ଦନ୍ତୌଷ୍ଠପୀଡ଼ନନଖକ୍ଷତରକ୍ତସିକ୍ତଂ
ତସ୍ୟାଃ ସ୍ମରାମି ରତିବନ୍ଧୁରନିଷ୍ଠୁରତ୍ୱମ୍ । ୧୮ ।

**ଗୀତ**— ତାର ମୋର ସୁରତି ସମରେ
ଘୋର ନଖଦନ୍ତ ତୀକ୍ଷ୍ଣ ଶରେ
ଶୋଣିତେ ଅଙ୍କିତ ହେଲା ଉରସ୍ଥଳ
ତାହା ବିସୋରି ନୋହେ ମନରେ
ରେ ଦୋସାଧୁ । ୪୧ ।
ରଣ ରଣ ନୂପୁର ଶବଦ
ସେହୁ ବଢ଼ାଇ ଅନଙ୍ଗ ଖେଦ
ତାହା ଚିନ୍ତା କରୁ କରୁ ଯେବେ ମୋର
ହେଲୁ ହେଲ ପଡ଼ୁଛି ପ୍ରମାଦ
ରେ ଦୋସାଧୁ । ୪୨ ।

**ଶ୍ଳୋକ**—ଅଦ୍ୟାପି ତାଂ ବିପୁଲଲୋଲବିଶାଳନେତ୍ରାଂ
ଶୀତାଂଶୁମଣ୍ଡଳମୁଖୀଂ କୁଟିଳାଳକାନ୍ତାମ୍ ।
ମତ୍ତେଭକୁମ୍ଭସଦୃଶସ୍ତନଭାରନମ୍ରାଂ
ବନ୍ଧୂକପୁଷ୍ପସଦୃଶୌଷ୍ଠପୁଟାଂ ସ୍ମରାମି । ୧୯ ।

**ଗୀତ**— ଯେତେ ରମଣୀ ବର ଶୃଙ୍ଗାର
ମନୁ କେବେହେ ନୋହେ ବିସୋର
ଜଗତ୍ରୟ ସୁଖ ମନେ ବିଗୁଣିଲେ
ମୋର କେବେ ନୋହେ ସୁଖକର
ରେ ଦୋସାଧୁ । ୪୩ ।

---

(୧) ବଣ୍ଡ (କ) (୨) ମନ୍ୟୋନ୍ୟବାଦ (ଖ)

ଯେବେ କରିବୁ ମୋତେ ନିଧନ
ତେବେ ହେବ ମୋ ଜୀବନ ଧନ୍ୟ
ନାକପୁରେ ଯାଇ ମୋ ପ୍ରିୟା ସୁରତ
ଗୁଣ ଗୁଣ କରିବ ବଖାଣ
ରେ ଦୋସାଧୁ । ୪୪ ।

ଶ୍ଳୋକଃ—ଅଦ୍ୟାପ୍ୟହଂ ବରବଧୂସୁରତୋପଭୋଗଂ
ଜୀବାମି ନାନ୍ୟବିଧିନା କ୍ଷଣମନ୍ତରେଣ ।
ତଦ୍ଭ୍ରାତରେ ମରଣମେବ ହି ଦୁଃଖଶାନ୍ତ୍ୟୈ
ବିଜ୍ଞାପୟାମି ଭବତ ସ୍ତ୍ୱରିତଂ ଲୁନୀଧ୍ୱମ୍ । ୨୦ ।

ମୋର ନାହିଁ ମରଣରେ ଚିନ୍ତା
ତନୁ ପାଇବ ଯେବେ ବଞ୍ଚିନ୍ତା
ନିଜ ଅଂଶେ ଭୂତ- ଗଣେ ଲୀନ ହେଉ
ମୋତେ ଏମନ୍ତ କରୁ ବିଧାତା
ରେ ଦୋସାଧୁ । ୪୫ ।
ତାର ଲୀଳା ଗମନ ଯରଣି
ତହିଁ ଯାଇ ରହୁ ମୋ ଧରଣୀ
ପ୍ରିୟାଲଗି ଯେବେ ଏ ପ୍ରାଣ ତେଜିବି
ତେବେ ହେବି ରସିକ-ଅଗ୍ରଣୀ
ରେ ଦୋସାଧୁ । ୪୬ ।

ଶ୍ଳୋକଃ—ଅଦ୍ୟାପି ନୋଜ୍ଝତି ହରଃ କିଲ କାଳକୂଟଂ
କୂର୍ମୋ ବିଭର୍ତ୍ତି ଧରଣୀଂ ଖଲୁ ପୃଷ୍ଠଭାଗେ (୧)
ଅମ୍ଭୋନିଧି ର୍ବହତି ଦୁଃସହବାଡ଼ବାଗ୍ନି-
ମଙ୍ଗୀକୃତଂ ସୁକୃତିନଃ ଖଲୁ (୨) ପାଳୟନ୍ତି । ୨୧ ।

---

(୧) ପୃଷ୍ଠକେନ (କ) (୨) ପର (ଗ)

ଗୀତ— ତୁ ରେ ବୋଇଲୁ ଦୋସାଧୁ ସଇ
କମ୍ପା ହୋଇଛୁ ଏସନ ତୁହି
ଦେଖ ମହା ଜନ ଯାହା ବୋଲଇ ସେ
ସ୍ନେହ କେବେହେଁ ଆନ ନୁହଇ
ରେ ଦୋସାଧୁ । ୪୭ ।

ଦେଖ ଯାହା ସେ ହର ବୋଇଲେ
ଗର ଉତ୍ପତ୍ତି ହେଲେ ଭକ୍ଷିଲେ
ଦେଖ ବିଷ୍ଣୁ ସଇ କରି କୂର୍ମ ହୋଇ
ପୃଥ୍ୱୀ ପୃଷ୍ଠଦେଶରେ ଧଇଲେ
ରେ ଦୋସାଧୁ । ୪୮ ।

ଦେଖ ଦୁଃସହ ବଡ଼ବାନଳ,
ଏହୁ ସହଜେ ଅଟେ ପ୍ରଜ୍ୱଳ
ସତ୍ୟ କରି ତାହା ବହିଛି ସାଗର
ସେ କ (?) ଭକ୍ଷିଲେ ସକଳ ଜଳ
ରେ ଦୋସାଧୁ । ୪୯ ।

ସ୍ନେହେ ମୁଁ ତାକୁ ବୋଲିଛି ଯାହା
ପ୍ରାଣ ଗଲେ ନ ଚେଜିବି ତାହା
ଶତ ଜନ୍ମେ ଯେବେ ହୋଇବି ରେ ମୁହିଁ
ଇଚ୍ଛା ବିନୁ ଆନରେ ସେନେହା
ରେ ଦୋସାଧୁ । ୫୦ ।

ଯେମନ୍ତରେ ନିଶି ହୋଏ ଶେଷ
ପ୍ରାଚୀ ଦିଗ ମଣ୍ଡଳେ ଦିନେଶ
ସୁରପୁରୁ ଏହି ସମୟେ ବାହାରି
ମଞ୍ଚେ ହୋଇଲେ ବ୍ରହ୍ମାଙ୍କ ଶିଷ
ହେ ସୁଜନେ । ୫୧ ।

ଦେଖି ନୃପତି ପ୍ରଣାମ କଲେ
ଦିବ୍ୟ ଆସନ ଦେଇ ପୂଜିଲେ
ଆଜ ମୋର କୁଳ ଜନମ ସଫଳ
ତୁମ୍ଭ ଦର୍ଶନ କି ପୁଣ୍ୟବଳେ
ହେ ଶ୍ରେ ମୁନି । ୫୨ ।

କେଉଁ କାରଣେ ମୋ ପୁରେ ଅସି
ଯେବେ ମିଳିଲ ହେ ବ୍ରହ୍ମଋଷି
ମୁଁ କିସ କରିବି ଆଜ୍ଞା ମୋତେ ହେଉ
ମୁଁ ଯେ ତୋ ପାଦ ସେବାଲାଳସୀ
ହେ ଶ୍ରେ ମୁନି । ୫୩ ।

ହସି କହନ୍ତି ସେ ତପୋଧନ
ଯେହ୍ନୁ କାରଣେ ଆମ୍ଭ ଗମନ
ତୋର ସୁତା ଇଚ୍ଛା- ବତୀ ସୁର-ନାରୀ
ଇନ୍ଦ୍ରଶାପେ ଲଭିଛି ଜନମରେ
ହେ ରାଜନ । ୫୪ ।

ଯେହୁ ପତି ସେ ଗନ୍ଧର୍ବବର
ଯେହୁ ବେନିଜଣେ ଜାତିସ୍ମର
ପୂର୍ବ ରତି ପ୍ରୀତି ଜାଣି ସେ ନୃପତି-
ସୁତ ପ୍ରବେଶ୍ୟ ତୋର ନଗର
ହେ ରାଜନ ।୫୫ ।

ଯେବେ ଦେଖିଲୁ ଏ ବିପରୀତ
ତୋର ପୁରେ ହୋଇଛି ବିଦିତ
ପୂର୍ବ ପ୍ରାଣପ୍ରିୟା ସଙ୍ଗ ସେ ଲଭିଲା
ତାକୁ କମ୍ପାଇଁ କରୁଛୁ ହତ
ହେ ରାଜନ । ୫୬ ।

ଯେହୁ ଶୁଣି ବୋଲେ ନୃପମଣି
ମୁହିଁ ଏମନ୍ତ ନ ଥିଲି ଜାଣି
ସେ ବେନି ସଙ୍ଗତ କରିଛି ବିଧାତା
ତାହା କେ ଆନ କରିବ ପୁଣି
ହେ ଭୋ ମୁନି । ୫୭ ।

ଶୁଣି ଏସନ ନୃପତି-ବାଣୀ
ହସି ବୋଲନ୍ତି ନାରଦେ ପୁଣି
ସୁତ ଇଚ୍ଛାବତୀ ବିଭା କରାଅ ସେ
ଲଭୁ ତାହାର ପ୍ରାଣମିତଣୀ
ହେ ରାଜନ । ୫୮ ।

ଯେତେ ବୋଲି ଗଲେ ସୁରପୁର
ଯେଥୁ ଅନନ୍ତରେ ନୃପବର
ଗୃହକୁ ଆଣି 'ଇଚ୍ଛା'ଙ୍କୁ ବାଞ୍ଛା କଲେ
ମନେ ହେଲେ ଆନନ୍ଦ ଅପାର
ହେ ସୁଜନେ । ୫୯ ।

ନାନା ବିନୋଦେ ସେ ବେନିଜନ
ନୃପପୁରେ ବଞ୍ଚିଲେ ସେ ଦିନ
ପୁଣି କେତେଦିନ ଅନ୍ତେ ମଧୁପୁରରେ
ନାନା ସମ୍ଭାରେ କଲେ ଗମନ
ହେ ସୁଜନେ । ୬୦ ।

ନାନା ରସେ ଇଚ୍ଛା ମଧୁକର
ହେଲେ ଅନଙ୍ଗ କୂପରୁ ପାର
ଇଚ୍ଛାବତୀ ଗୃହ ଲୀଳା ଦଶ ଛନ୍ଦ
ଶେଷ ରସିକ ହୃଦୟହାର
ହେ ସୁଜନେ । ୬୧ ।

ଯୋଗୀ-ନୟନ-ଚକୋର-ଇନ୍ଦୁ
ଦୁଃଖିଜନ ଅକାରଣ-ବନ୍ଧୁ
ଚିନ୍ତିତ ଜନର ହୃଦ-ଚିନ୍ତାମଣି
ଭକ୍ତଜନର ଅମୃତସିନ୍ଧୁ
ହେ ସୁଜନେ । ୬୨ ।

ନୀଳ ଶିଖରେ ସେ ବ୍ରହ୍ମ ରହି
ଦାରୁ ସ୍ୱରୂପେ ଅଛନ୍ତି ବସି
ଭୁକତ ମୁକତ ଦରଶନେ ଯା'ର
ହେଲେ ଲଭନ୍ତି ସେ ବ୍ରହ୍ମଦର୍ଶୀ
ହେ ସୁଜନେ । ୭୩ ।

ଯାହାଁ ପାଦପଦ୍ମ ମଧୁକର
ହୋଇଛନ୍ତି ବ୍ରହ୍ମ ସୁରନର
ସେ ପାଦ-ପଦ୍ମ ଯୁଗଳେ ଧନଞ୍ଜୟ
ମନ ହୋଇଅଛି ଧ୍ୟାନପର
ହେ ସୁଜନେ । ୭୪ ।

---

ସମାପ୍ତ

# ଶ୍ଳୋକମାନଙ୍କର ଅନ୍ୱୟ ଓ ଅର୍ଥ

ପୃ-୨୬—(ଅନ୍ୱୟଃ) ସର୍ବାଙ୍ଗସ୍ୱଙ୍ଗେ ! କାମକଳାକଳାପେ ! ସଙ୍ଗୀତ-ବିଦ୍ୟାରସିକେ ! ଅମ୍ବୁଜାକ୍ଷି ! ହେମପ୍ରଭେ ! ସୁରୁଚିରତମ୍ବ-ବିମ୍ବେ ! ବିମ୍ବୋଷ୍ଠି ! ରମ୍ଭୋରୁ ! ମୟି (ତ୍ୱଂ) ପ୍ରସୀଦ ।୧।

ଅର୍ଥ—ହେ ସର୍ବସୁନ୍ଦରି, କାମକଳାସମୃଦ୍ଧ, ସଙ୍ଗୀତବିଦ୍ୟା-ରସିକେ, ପଦ୍ମନେତ୍ରି, ସ୍ୱର୍ଣ୍ଣପ୍ରଭେ, ସୁନ୍ଦରନିତମ୍ବିନି, ବିମ୍ବୋଷ୍ଠି ରମ୍ଭୋରୁ, ମୋଠାରେ ତୁମ୍ଭେ ପ୍ରସନ୍ନ ହୁଅ । ୧ ।

ପୃ-୨୭—(ଅନ୍ୱୟଃ) ହେ ବାଲେ ! ଅବଲାରତ୍ନ ! ଦସ୍ମାର୍ଦ୍ଧଶଙ୍କେ ! ପ୍ରାଣେଶ୍ୱରି ! ଶ୍ରୀମତି ! ସୁପ୍ରସନ୍ନେ ! ସୁନ୍ଦରି ! ସତ୍କକନ୍ୟେ ! ମୃଗାକ୍ଷି ! (ଅହଂ) ତେ ଦାସଃ ଅସ୍ମି, ମେ ପ୍ରାଣାନ୍ ତୁ (ତ୍ୱଂ) ରକ୍ଷାଂ କୁରୁ । ୨ ।

ଅର୍ଥ—ହେ ବାଲେ, ହେ ସ୍ତ୍ରୀରତ୍ନ, ହେ ଦସ୍ମାର୍ଦ୍ଧଶଙ୍କେ, ହେ ପ୍ରାଣେଶ୍ୱରି, ହେ ଶ୍ରୀମତି, ହେ ସୁପ୍ରସନ୍ନେ, ହେ ସୁନ୍ଦରି, ହେ ସତ୍କକନ୍ୟେ, ହେ ମୃଗନେତ୍ରି, ମୁଁ ତୁମ୍ଭର ଦାସ, ମୋ ପ୍ରାଣକୁ ତୁମ୍ଭେ ରକ୍ଷା କର ।୨।

ପୃ-୨୭—(ଅନ୍ୱୟଃ) ହେ ପାନ୍ଥ ! ଚନ୍ଦ୍ରାକୃତିତାଢମୂଢ଼ ! ଅବଲାଂ ତୃଣାଙ୍ଗୀ ବାଲାଂ ତ୍ୱଂ (ତ୍ୱଂ) ସ୍ତୌଷି, ଯଦି (ତ୍ୱଂ) ଅର୍ଥଂ ପ୍ରାର୍ଥୟସେ (ତଦା) ଋଣଂ ଭଜ, ମୋକ୍ଷଂ ଚ (ଯଦି ପ୍ରାର୍ଥୟସେ ତଦା ତ୍ୱଂ ) ଅମ୍ବୁଜାକ୍ଷଂ ଲକ୍ଷ୍ମୀପତିଂ (ଭଜ) ।୩।

ଅର୍ଥ—ଚିନ୍ତାକୁଳ ହେତୁ ଅତ୍ୟନ୍ତ ମୂର୍ଖ, ହେ ପଥିକ ! କୃଶାଙ୍ଗୀ ଓ ବଳରହିତ ବାଳାକୁ କାହିଁକି ସ୍ତବ୍ଧ କରୁଅଛ ? ଯଦି ତୁମ୍ଭେ ଧନ ପ୍ରାର୍ଥନା କରୁଅଛ, ତେବେ ଶଙ୍କରଙ୍କୁ ସେବା କର, ମୋକ୍ଷ ର ପ୍ରାର୍ଥନା ଥିଲେ ପଦ୍ମନେତ୍ର ଲକ୍ଷ୍ମୀପତିଙ୍କୁ ସେବା କର । ୭ ।

ସୁ-୨୮—(ଅନ୍ୱୟଃ) ସୁବର୍ଣ୍ଣବର୍ଣ୍ଣେ ! ଅତ୍ର ତ୍ୱଂ ଏବ (ମେ) ଧନଂ, ସ୍ତ୍ରୀରତ୍ନଭୂତେ ! ମମ ରତ୍ନଭୂଷା (ତ୍ୱମେବ) ଭୂପସୁତେ ! ପ୍ରସନ୍ନେ ! ତେ ସେବା ଅପି ସୌଖ୍ୟପ୍ରଦଃ, ମୋକ୍ଷଦ-ବାସୁଦେବଃ (ନ ତୁ ସୌଖ୍ୟପ୍ରଦଃ) । ୮ ।

ଅର୍ଥ—ହେ ସ୍ୱର୍ଣ୍ଣବର୍ଣ୍ଣେ, ସଂସାରରେ କେବଳ ତୁମ୍ଭେ ମୋର ଧନ, ହେ ସ୍ତ୍ରୀରତ୍ନସ୍ୱରୂପେ ! ମୋର ରତ୍ନାଳଙ୍କାର ମଧ୍ୟ ତୁମ୍ଭେ, ହେ ରାଜପୁତ୍ରି ! ପ୍ରସନ୍ନେ ! ତୁମ୍ଭର ସେବା ମଧ୍ୟ ଆନନ୍ଦଦାୟକ, ମୋକ୍ଷଦ ବାସୁଦେବ ସୌଖ୍ୟପ୍ରଦ ନୁହନ୍ତି, (କାରଣ ମୋକ୍ଷାବସ୍ଥାରେ ସୁଖଦୁଃଖାନୁଭୂତି ହୁଏ ନାହିଁ) ।୮।

ସୁ-୨୮—(ଅନ୍ୱୟଃ) ହେ ପ୍ରିୟେ ! ସଦା ମନୋହରଂ ନିଷ୍କଳଙ୍କଂ ତେ ପୂର୍ଣ୍ଣତରଂ ମୁଖଚନ୍ଦ୍ରମଣ୍ଡଳଂ ବିଲୋକ୍ୟ, ସବ୍ରୀଡତୟା ପ୍ରତପ୍ତଃ ନିଶାପତିଃ ଜଳଧେଃ ଜଳାନ୍ତରଂ ଗତଃ । ୯ ।

ଅର୍ଥ—ହେ ପ୍ରିୟେ ! ସର୍ବଦା ମନୋହର ଓ କଳଙ୍କଶୂନ୍ୟ ତୁମ୍ଭର ପୂର୍ଣ୍ଣ ମୁଖ-ଚନ୍ଦ୍ରମଣ୍ଡଳକୁ ଦେଖି, ଲଜ୍ଜାବଶତଃ ସଂତପ୍ତ ଚନ୍ଦ୍ର, ସମୁଦ୍ରର ଜଳମଧ୍ୟରେ ନିମଜ୍ଜିତ ହେଲା, (ଅର୍ଥାତ୍ ଅସ୍ତ ହେଲା) ।୯।

ସୁ-୨। —(ଅନ୍ୱୟଃ) କେତକୀପରିମଳୋତ୍ଥିତଗନ୍ଧଲୁବ୍ଧଗୁଞ୍ଜଦ୍ ଭ୍ରମଦ୍-ଭ୍ରମର ! ଯତ୍କଣ୍ଟକୈଃ ପରିବୃତାଂ ଅତୁଲାଂ ଅଗମ୍ୟାଂ ସଂରକ୍ଷିତାଂ, ଏତାଂ ବ୍ରଜସି, କିଂ ଭନ୍ତୁଂ ବାଞ୍ଛସି, ସମୁଖାଂ ଲତାଂ ଗଚ୍ଛ । ୨ ।

ଅର୍ଥ—ହେ କେତକୀ ପୁଷ୍ପର ବିମର୍ଦ୍ଦଜନିତ ଗନ୍ଧର ଲୋଭୀ ହୋଇ ଗୁଞ୍ଜନ ସହିତ ବୁଲୁଥିବା ଭ୍ରମର ! ଯେହେତୁ କଣ୍ଟକ-ଦ୍ୱାରା ବେଷ୍ଟିତା, ଅତୁଳନୀୟା, ଅଗମ୍ୟା ଓ ସୁରକ୍ଷିତା

ଏହା ପାଖକୁ ଯାଉଅଛୁ, କ'ଣ ? ରମଣ କରିବାକୁ (ଯଦି) ଇଚ୍ଛା କରୁଅଛ, ତେବେ ପୁଷ୍ପିତା ଅନ୍ୟ ଲତା ପାଖକୁ ଯାଅ । ୬ ।

ପୃ-୬୨—(ଅନ୍ୱୟଃ) ଯତ୍ର କେତକୀକୁସୁମସୌରଭଗନ୍ଧଲୁବ୍ଧଃ, ତଦର୍ପିତରସୋଦଯୁକ୍ତଚିତ୍ତବୃତ୍ତିଃ ଭୃଙ୍ଗଃ କିଂ ଦୁର୍ଗମ ଏବ କଣ୍ଟକଂ ଭବତୁ । ହେ ସୁଭ୍ରୁ ! କିଂ ବା ଜାନାତୁ ବରଂ କୁଞ୍ଜଲତାଂ ନ ତ ଇଚ୍ଛେତ୍ । ୭ ।

ଅର୍ଥ—ଯେ ହେତୁ କେତକୀପୁଷ୍ପର ଉତ୍ତମ-ଗନ୍ଧଲୋଭୀ ଓ କେତକୀପୁଷ୍ପର ରସରେ ସଂଲଗ୍ନଚିତ୍ତବୃତ୍ତି—ଭ୍ରମର କ'ଣ ଦୁର୍ଗମ ବୋଲି କଣ୍ଟକକୁ ମନେ କରେ ? ଅଥବା ଆପଣ ଜାଣନ୍ତୁ, ହେ ସୁଭ୍ରୁ ! ଉତ୍ତମ କୁଞ୍ଜଲତାକୁ ମଧ୍ୟ ସେ ଇଚ୍ଛା କରେନାହିଁ ।୭।

ପୃ-୬୯—(ଅନ୍ୱୟଃ) ବର୍ତ୍ତୁଳସ୍ଥୂଳସୁବର୍ଣ୍ଣକାନ୍ତିଂ ଏତତ୍ ଶ୍ରୀଫଳଯୁଗ୍ମଂ ତ୍ୱତ୍ ରମ୍ୟସ୍ତନଂ ଦୃଷ୍ଟ୍ୱା, ଲଜ୍ଜାଭରଂ ଶ୍ରୀଫଳମାତୁଳଙ୍ଗଂ ବନେ ବୃକ୍ଷେ ଲମ୍ବିତଂ ଏବ । ୮ ।

ଅର୍ଥ—ବର୍ତ୍ତୁଳାକାର ସ୍ଥୂଳ ଓ ସୁବର୍ଣ୍ଣକାନ୍ତିଯୁକ୍ତ ଏହି ଶ୍ରୀଫଳ-ସ୍ୱରୂପ ତୁମ୍ଭର ସୁନ୍ଦର ବେନି ସ୍ତନକୁ ଦେଖି ଲଜ୍ଜିତ ଭାବରେ ବେଲ୍ୱ ଓ ମାତୁଳଙ୍ଗ ବନମଧ୍ୟସ୍ଥ ବୃକ୍ଷରେ ଲମ୍ବିତ ହୋଇଛି ।୮।

ପୃ-୭୦—(ଅନ୍ୱୟଃ) ହେ କୋକିଳ ! ଅଖିଳ ଲତାସୁ ଫଳାନି ସନ୍ତି, କିନ୍ତୁ ତାନି ସଂତ୍ୟଜ୍ୟ, ଫଳଭୋକ୍ତୁକାମଃ (ତ୍ୱଂ) ସପୁଷ୍ପାଂ ଚୂତଲତାଂ ରମିତୁଂ ଇହ କିଂ କାଙ୍କ୍ଷସି, ମେ ନୋ ବୁଧ୍ୟ, ଏଷା ନୃପତିସେବକଗୃହିଃ । ୯ ।

ଅର୍ଥ—ହେ କୋକିଳ ! ସମସ୍ତ ଲତାରେ ଫଳ ବିଦ୍ୟମାନ, କାହିଁକି ତାକୁ ଛାଡ଼ି ଫଳଭୋଗ କାମନାଯୁକ୍ତ ତୁମ୍ଭେ, ପୁଷ୍ପିତ ଆମ୍ରଲତାରେ କ୍ରୀଡ଼ା କରିବାକୁ ଏଠାରେ ଇଚ୍ଛା କରୁଅଛ, ମୋ ପ୍ରତି ବୋଧ କର ନାହିଁ, ଏହା ରାଜସେବକର ଭାର୍ଯ୍ୟା ।୯।

ପୃ-୬୦—(ଅନ୍ୱୟଃ) ଅନ୍ୟାନି ଜଲାନି ହିତ୍ୱା ଯତ୍ର ଘୃତକଃ ଧାରାଜଳ-
ପ୍ରାପ୍ତ ମଣ୍ଡଂ କରୋତି, ତଥା ପିକଃ ରମ୍ୟାଣି ଚୂତଲତାଫଲାନି
ଦୃଷ୍ଟ୍ୱା ଅନ୍ୟ ଫଳାନି ନ ଚ ଇଚ୍ଛେତ୍ତୁ ।୧୦।

ଅର୍ଥ—ଅନ୍ୟ ସମସ୍ତ ଜଳ ଛାଡ଼ି ଯେ ହେତୁ ଘୃତକ
ଧାରାଜଳ ପ୍ରାପ୍ତିରେ ବୃଦ୍ଧି କରେ, ସେହିପରି କୋକିଳ
ସୁନ୍ଦର ଆମ୍ରଫଳକୁ ଦେଖି ଅନ୍ୟ ଫଳକୁ ଇଚ୍ଛା କରେ
ନାହିଁ । ୧ ।

ପୃ-୬୧—(ଅନ୍ୱୟଃ) ହେ ବରକ୍ଷଣେ ! ପଦ୍ମିନି ! ପଦ୍ମଗନ୍ଧେ ! ପ୍ରମତ୍ତ-
ମାତଙ୍ଗଗତେ ! ଅନୁରକ୍ତେ ! ନୃପାତ୍ମଜେ ! ମନୋଜ୍ଞେ !
ମନୋଜବାଣବ୍ରଣଖିନ୍ନଗାତ୍ରଂ ମାଂ ଜୀବୟ । ୧୧ ।

ଅର୍ଥ—ହେ ବରକ୍ଷଣେ ! ପଦ୍ମିନି ! ପଦ୍ମଗନ୍ଧେ ! ଉନ୍ମତ୍ତଗଜ-
ଗାମିନି ! ଅନୁରାଗିଣି ! ନୃପନନ୍ଦିନି ! ସୁନ୍ଦରି ! କନ୍ଦର୍ପଶରଜନିତ
ବ୍ରଣଦ୍ୱାରା ଦୁଃଖିତଶରୀର ମତେ ଜୀବଦାନ କର । ୧୧ ।

ପୃ-୬୨—(ଅନ୍ୱୟଃ) ମୃଦାଦିପାତ୍ରେ ସଲିଲଂ ଯଥା ତୃଷାହରଂ ସ୍ୱାଦୁ
ସୁଶୀତଳଂ ଚ ସ୍ୟାତ୍, ସୁବର୍ଣ୍ଣରତ୍ନୈଃ ଅପି ନିର୍ମିତେ
ସୁପାତ୍ରେ ଗତଂ ଅମ୍ବୁ ତଥା କିଂ ନ ସ୍ୟାତ୍ତୁ । ୧୨ ।

ଅର୍ଥ—ମୃତ୍ତିକା ଆଦି ନିର୍ମିତ ପାତ୍ରରେ ସ୍ଥିତ ଜଳ ଯେପରି ତୃଷା-
ନାଶକ, ସ୍ୱାଦୁ ଓ ସୁଶୀତଳ ହୁଏ, ସୁବର୍ଣ୍ଣ ଓ ରତ୍ନ ନିର୍ମିତ ସୁନ୍ଦର
ପାତ୍ରସ୍ଥିତ ଜଳ କଣ ସେପରି ହୁଏ ନାହିଁ ? ।୧୨।

ପୃ-୬୧—(ଅନ୍ୱୟଃ) ସହେମରତ୍ନରଚିତନିର୍ମିତ-ଶୁଭ୍ରପାତ୍ରେ (ସ୍ଥିତଂ)
କର୍ପୂରବାସିତତରଂ ସୁରମ୍ୟଂ ଗାଙ୍ଗ ସୁନିର୍ମଳଜଳଂ ଯଥା
ପରମଂ ସୁଖଦଂ ସ୍ୟାତ୍ତୁ, ତଥା ବଧାନଂ କୌପଂ ପୟଃ କିମୁ
ଭବେତ୍ତୁ ହି । ୧୩ ।

ଅର୍ଥ—ବିଶୁଦ୍ଧ ସୁବର୍ଣ୍ଣ ଓ ରତ୍ନସମୂହଦ୍ୱାରା ନିର୍ମିତ ସୁନ୍ଦର
ପାତ୍ରରେ (ସ୍ଥିତ) କର୍ପୂରସୁଗନ୍ଧିତ ଅତ୍ୟୁତ୍ତମ ଗଙ୍ଗାନଦୀର ନିର୍ମଳଜଳ
ଯେପରି ପରମ ଆନନ୍ଦଦାୟକ ହୁଏ, ସେପରି କ'ଣ କୂପର ଜଳ
ହୁଏ ତ ? (ଅର୍ଥାତ୍ତ ହୁଏ ନାହିଁ) । ୧୩ ।

ପୃ-୩୨—(ଅନ୍ୱୟଃ) ବଳୟଯୁବକସୁସୂକ୍ଷ୍ମମଧ୍ୟେ ! ବଣୌପଦ୍ବାସ୍ୟ ଔଷଧ-
ମନ୍ତ୍ରରୂପେ ! ମନୋଜବାଣୌଘବଶାଭିଗାଙ୍ଗଂ ମାଂ ସମ୍ପ୍ରତି
ଅନୁଗ୍ରହଂ କୁରୁ । ୧୪ ।

ଅର୍ଥ—ହେ ତ୍ରିବଳଯୁକ୍ତକ୍ଷୀଣକଟି ! (କନ୍ଦର୍ପ) ବଶକାରଣର ଔଷଧ
ଓ ମନ୍ତ୍ରରୂପିଣି ! କନ୍ଦର୍ପର ବାଣ-ସମୂହଜନିତ ବଶଦ୍ୱାରା ପୀଡ଼ିତ-
ଶରୀର, ମୋ ପ୍ରତି ବର୍ତ୍ତମାନ ଅନୁଗ୍ରହ କର । ୧୪ ।

ପୃ-୩୨—(ଅନ୍ୱୟଃ) କନ୍ଦର୍ପବାଣାବଶଚଞ୍ଚଳବୃତ୍ତିଃ (ତ୍ୱଂ) ସ୍ୱଗତିଂ ଏବଂ
(ବଚନଂ) କମର୍ଥଂ ବଦସି, ହେ କାମୁକ ! ଯଦି ମେ ପିତା ତୁ
ଏବଂ ଜ୍ଞାତବ୍ୟଂ ତ୍ୱଯ୍ୟା କଥଂ ଜୀବିତବ୍ୟଂ । ୧୪ ।

ଅର୍ଥ—କାମଶରଦ୍ୱାରା ଅବଶଚଞ୍ଚଳବୃତ୍ତି ତୁମ୍ଭେ ଏହିପରି କାମ-
ପୀଡ଼ିତ ବଚନକୁ କାହିଁକି କହୁଅଛ । ଯଦି ମୋର ପିତା ଏହା ଜାଣନ୍ତି,
ତେବେ ହେ କାମୁକ ! ତୁମ୍ଭେ କିପରି ଜୀବନ ଧାରଣ କରିବ । ୧୫ ।

ପୃ-୩୪—(ଅନ୍ୱୟଃ) ସୀତାହରଣେ ସ ତ ରାମଃ ଦଶଭିଃ ବାଣୈଃ
ଦଶାସ୍ୟଶିରାଂସି ଜଘାନ, ତ୍ୱଦଙ୍ଗସଙ୍ଗାୟ ମମ ଅନୁରକ୍ତଂ
ଏକଂ ଏବ ମସ୍ତକଂ ମେ ପ୍ରୟାତୁ । ୧୬ ।

ଅର୍ଥ—ସୀତାଙ୍କ ହରଣରେ ସେହି ରାମ ଦଶଗୋଟି ଶରଦ୍ୱାରା
ଦଶାନନର ଶିରସମୂହକୁ କାଟିଥିଲେ, ତୋର ଅଙ୍ଗପ୍ରାପ୍ତି ପାଇଁ ମୋର
ଅନୁରକ୍ତ ଗୋଟିଏ ମାତ୍ର ମସ୍ତକ ନଷ୍ଟ ହେଉ । ୧୬ ।

ପୃ-୩୫—(ଅନ୍ୱୟଃ) ତ୍ୱଦ୍ରୂପଦର୍ଶନଂ ଅଶୁ ଦେହି, ମେ ଚକ୍ଷୁର୍ଦ୍ୱୟଂ
ସଫଳଂ କୁରୁଷ୍ୱ, ଯେନ ନରୋତ୍ତମେନ ତପଃ କୃତଂ, ତେନ
ତବ ଅଙ୍ଗସଙ୍ଗଃ ଲଭ୍ୟ ଏବ । ୧୭ ।

ଅର୍ଥ—ତୁମ୍ଭରୂପର ଅବଲୋକନକୁ ଶୀଘ୍ର ଦିଅ, ମୋର ନେତ୍ର-
ଦ୍ୱୟକୁ ସଫଳ କର, ଯେଉଁ ପୁରୁଷଶ୍ରେଷ୍ଠ ତପସ୍ୟା କରିଅଛି, ସେହି
ତୁମ୍ଭର ଅଙ୍ଗଲାଭ ପ୍ରାପ୍ତ କରିବ । ୧୭ ।

ପୃ-୩୪—(ଅନ୍ୱୟଃ) ସଂଶ୍ରମାଗରପୟୋଭିମେନ ସମନ୍ୱିତେନ ଅପି
ସୁଧୋପଗମନ ବୁଦ୍ଧିମ୍ଭରଭୋଜନେନ ବିନା ଅପି, କିଂ ନନୁ
ଦର୍ଶନେନ ସମ୍ପୂର୍ଣ୍ଣତେ । ୧୮ ।

ଅର୍ଥ—ଖଣ୍ଡ ଗୋଲମରିଚ ଓ ଉତ୍ତମ ଦୁଗ୍ଧଯୁକ୍ତ ହେଲେ ମଧ୍ୟ ଅମୃତ ସଦୃଶ (ଭୋଜ୍ୟବସ୍ତୁ) ଉଦର ପୂର୍ତ୍ତି ଭୋଜନ ବିନା କିଣ, କେବଳ ଦେଖିବାଦ୍ୱାରା (ଉଦର) ପୂର୍ଣ୍ଣ ହୁଏ । ୧୮ ।

ପୃ-୧୪—(ଅନ୍ୱୟଃ) ଭୋଦେବ ! ସୁଭ୍ରୁ ! କୃଶଣୀତଳକୋମଳାଙ୍ଗି ! ନାନାବିଭୂଷଣବିଭୂଷିତଶୁଭାଙ୍ଗି ! ହୃଦ୍ୟେ ! ପ୍ରାଣପ୍ରଦେ ! ଅଜ୍ଞାଂ ବିଧେହି, ଅହଂ କିଂ କରବାଣି, ମେ ଅଭିଳାଷଂ ପରିପୂରୟ । ୧୯ ।

ଅର୍ଥ—ହେ ଦେବି ! ସୁଭ୍ରୁ ! କୃଶଣୀତଳକୋମଳାଙ୍ଗି ! ଅନେକଭୂଷଣଶୋଭିତସୁନ୍ଦରାଙ୍ଗି ! ମନୋରମେ ! ପ୍ରାଣଦାୟି ! ଆଜ୍ଞା କର, ମୁଁ କିଣ କରିବି, ମୋର ଅଭିଳାଷକୁ ପରିପୂରଣ କର ।୧୯।

ପୃ-୩୪—(ଅନ୍ୱୟଃ) ବିଦ୍ୟାବିନୋଦରସିକେ ! ସୁରତୈକପାଙ୍କି ! ସର୍ବାଙ୍ଗସୁନ୍ଦରି ! ଧରାଶ୍ରିପତେଃ ପ୍ରସୂତେ ! ସଦୟେ ! ଅଦ୍ୟ ଯଦି ମେ ତବ ଦୟା ଏବ ନ ଅସ୍ତି, (ତର୍ହି) ତ୍ୱତ୍ପ୍ରାପ୍ତୟେ ସୁରସରିତ୍ତନୁଂ ତ୍ୟଜାମି । ୨୦ ।

ଅର୍ଥ—ହେ ବିଦ୍ୟାବିନୋଦରସିକେ ! ସୁରତୈକପାଙ୍କି ! ସର୍ବାଙ୍ଗସୁନ୍ଦରି ! ନୃପାତ୍ମଜେ ! ଦୟାଯୁକ୍ତେ ! ଆଜି ଯଦି ମୋ ଉପରେ ତୁମର ଦୟା ନାହିଁ, ତେବେ ତୁମର ପ୍ରାପ୍ତି ପାଇଁ ଗଙ୍ଗାରେ ଶରୀର ତ୍ୟାଗ କରିବି । ୨୦ ।

ପୃ-୩୫—(ଅନ୍ୱୟଃ) କାଳନ୍ଦୀତଟସନ୍ନିଧୌ ଉପବନେ ସୁପୁଷ୍ପାନ୍ୱିତେ କଳ୍ପମହୀରୁହାଶ୍ରିତଲତାବାସେ ସ୍ଥିତ୍ୱା, ଗୋପାଙ୍ଗନାଲିଙ୍ଗନକ୍ରୀଡ଼ାକର୍ଷଣଚୁମ୍ବନାଦିଭୂଷିତଃ, ବେଣୁନା ସଂସ୍କୃତଃ ନାନାଭୂଷଣଭୂଷିତଃ, ବିହସିତଃ, କୃଷ୍ଣଃ ମାଂ (ପ୍ରତି) ପ୍ରସନ୍ନଃ ଅସ୍ତୁ । ୨୧ ।

ଅର୍ଥ—ଯମୁନାତଟନିକଟ ଉପବନସ୍ଥ ପୁଷ୍ପଯୁକ୍ତ କଳ୍ପବୃକ୍ଷାଶ୍ରିତଲତାଗୃହରେ ରହି ଗୋପାଙ୍ଗନାସୁରତକ୍ରୀଡ଼ାଶୋଭିତ ବେଣୁଯୁକ୍ତ ଅନେକଭୂଷଣଭୂଷିତ ହାସଯୁକ୍ତ ଶ୍ରୀକୃଷ୍ଣ ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।୨୧।

ପୃ-୩୬—(ଅନ୍ୱୟଃ) ଏଷ ବନୋଦଯୌଧଃ ଅନ୍ତଃପୁରଗୃହଃ ପୁରଷକୈଃ ଇଙ୍ଗିତହେଲୁବକ୍ଷୈଃ ସଖୀଜନୈଃ ଚ ସୁଦୁର୍ଗମଃ, ହ ତେ ବାଞ୍ଛିତସିଦ୍ଧିଃ କଥଂ ଅସ୍ତୁ । ୧ ।

ଅର୍ଥ—ଏହି ବନୋଦଭବନ ଅନ୍ତଃପୁରଗୃହ ଉତ୍ତମ ରକ୍ଷକଙ୍କ-ଦ୍ୱାରା, ହୃଦ୍‌ଗତଭାବଗ୍ରାହୀ ସଖୀମାନଙ୍କଦ୍ୱାରା ମଧ୍ୟ ଅତ୍ୟନ୍ତ ଦୁଷ୍ପ୍ରବେଶ୍ୟ, ଏଣୁ ତୁମ୍ଭର ଅଭିଳଷିତ ସିଦ୍ଧି କିପରି ହେବ ? । ୧ ।

ପୃ-୩୬—(ଅନ୍ୱୟଃ) ହେ ରାଜନନ୍ଦିନ୍ୟ ! ତ୍ୱଯି ପ୍ରସନ୍ନାୟାଂ ମମ ବାଞ୍ଛିତସ୍ୟ ସୁସିଦ୍ଧିଃ ଭବେତ୍ତୁ, ହେ ସୁକେଶି ! ଅଭୀଷ୍ଟଦା କଳ୍ପଲତା ଇବ ଅସି, କିଂ ତ୍ୱଂ ଚିନ୍ତାମଣିଃ ଏବ । ୨ ।

ଅର୍ଥ—ହେ ରାଜପୁତ୍ରି ! ତୁମ୍ଭେ ପ୍ରସନ୍ନ ହେଲେ ମୋ ମନୋ-ରଥର ସୁସିଦ୍ଧି ହେବ । ହେ ସୁକେଶି ! ଅଭିଳଷିତ ଫଳଦାୟୀ କଳ୍ପଲତା ପରି ତୁମ୍ଭେ ଶୋଭିତ ହେଉଅଛ, କ'ଣ ତୁମେ ଚିନ୍ତାମଣି ? । ୨ ।

ପୃ-୩୭—(ଅନ୍ୱୟଃ) ହେ ମୃଦୁଲ-କନକ-କାନ୍ତେ ସ୍ନାନସୌରଭ୍ୟରମ୍ୟେ ତବ ବଦନକମଲମଧ୍ୟେ ନେତ୍ରମତ୍ତଦ୍ୱିରେଫଂ ଇହ ସମୀକ୍ଷ୍ୟ, ବ୍ରୀଡ଼ୟା ପଦ୍ମବୃନ୍ଦଃ ସଲିଲପୂର୍ଣ୍ଣେ ସରସି ମଜ୍ଜିତୁକାମଃ ପ୍ରବେଶଃ କିଂ । ୩ ।

ଅର୍ଥ—କୋମଳ କନକକାନ୍ତିଯୁକ୍ତ ସ୍ନାନଜନିତ ସୁଗନ୍ଧ ଓ ମନୋହର ତୁମ ମୁଖ-କମଳମଧ୍ୟରେ ନେତ୍ରରୂପକ ଉନ୍ମତ୍ତଭ୍ରମରକୁ ଏଠାରେ ନିରୀକ୍ଷଣ କରି, ଲଜ୍ଜାବଶତଃ ପଦ୍ମସମୂହ ଜଳପୂର୍ଣ୍ଣ ସରୋବରରେ ମଜ୍ଜିବା ଇଚ୍ଛାରେ ପ୍ରବେଶ କରିଅଛି କି ? । ୩ ।

ପୃ- ୮ —(ଅନ୍ୱୟଃ) ଜ୍ୟୋତ୍ସ୍ନା ଦର୍ଶ ଗଚ୍ଛତୁ, ପୁଂସଃ କର୍ମଫଳେନ ବାଞ୍ଛିତସ୍ୟ ସିଦ୍ଧିଃ ଭବେତ୍ତୁ, ହେ ଅଧୀର ! ଲବ୍ଧଃ (ସନ୍) ପୁନଃପୁନଃ ବାକ୍ୟଂ (ବଦସି), ତୁଷ୍ଟଃ କିଂ ଦ୍ୱିଜବରେଣ ଭୁଙ୍କ୍ତେ । ୪ ।

ଅର୍ଥ—ଚନ୍ଦ୍ରାଲୋକ ନଷ୍ଟ ହେଉ, ପୂରୁଷର କର୍ମଫଳ ଅନୁସାରେ ଅଭିଳଷିତର ସିଦ୍ଧି ହୁଏ, ହେ ଅଧୀର ! ଲୁବ୍ଧ ହୋଇ ବାରମ୍ବାର ବାକ୍ୟ କାହିଁ କହୁଛ, ବୁଦ୍ଧିମାନ ଜନ କ'ଣ ବୁଲିବାଟରେ ଯାଏ ? ।୮।

ପୃ-୩୮—(ଅନ୍ୱୟଃ) ହେ ପ୍ରାଣାଧିକେ ! ପ୍ରିୟତମେ ! ସମ୍ପ୍ରତି ତବ ରୂପ-ରଜ୍ଜୁବଦ୍ଧଃ ଅସ୍ମି, ଭବନେ କଥଂ ବସାମି, ହେ ରାଜାତ୍ମଜେ ! ସୁନ୍ଦରି ! (ମମ) ନର୍ମରୂପା ତ୍ୱଂ ଅସି, ତ୍ୱତ୍ପ୍ରୀତିରମ୍ୟସୁରତୈଃ ମମ କାର୍ଯ୍ୟସିଦ୍ଧିଃ । ୫ ।

ଅର୍ଥ—ହେ ପ୍ରାଣାଧିକେ ! ପ୍ରିୟତମେ ! ବର୍ତ୍ତମାନ ତୁମ ରୂପ-ରଜ୍ଜୁରେ ମୁଁ ବଦ୍ଧ, ଗୃହରେ କିପରି ବାସ କରିବି, ହେ ରାଜପୁତ୍ରି ! ସୁନ୍ଦରି ! ତୁମେ ମୋର ନର୍ମସ୍ୱରୂପା, ତୁମ ପ୍ରୀତିଦ୍ୱାରା ରମ୍ୟ ସୁରତରେ ମୋର କାର୍ଯ୍ୟସିଦ୍ଧି ହେବ । ୫ ।

ପୃ-୩୯—(ଅନ୍ୱୟଃ) ହେ ଚନ୍ଦ୍ରାନନେ ! ବର୍ତ୍ତୁଳତୁଙ୍ଗତାଳରମ୍ୟସ୍ତନେ ! ସ୍ମେରସୁଧାବ୍ଜନେତ୍ରେ ! ବନ୍ଦ୍ୟାବନୋଦେ ! ସୁବିଚକ୍ଷଣେ ! ସ୍ତ୍ରୀରତ୍ନଭୂତେ ! ଭେ ! ମୟି ତ୍ୱଂ ପ୍ରସୀଦ । ୬ ।

ଅର୍ଥ—ହେ ଚନ୍ଦ୍ରମୁଖି ! ଗୋଲାକାର ଉନ୍ନତ ତାଳସଦୃଶ ରମ୍ୟସ୍ତନେ ! ବିକସିତଅମୃତପଦ୍ମନେତ୍ରେ ! ବନ୍ଦ୍ୟାବନୋଦେ ! ବୁଦ୍ଧିମତି ! ଅବଳାରତ୍ନ ! ଅୟି ! ମୋଠାରେ ତୁମେ ପ୍ରସନ୍ନ ହୁଅ ।୬।

ପୃ-୩୯—(ଅନ୍ୱୟଃ) କାମାଭିରାମ ! କାମାର୍ତ୍ତି ! ପ୍ରୀତିବିଶ୍ରମ୍ଭଭାଜନ ! ଅନ୍ୟରୂପଧୃକ୍ (ତ୍ୱଂ) ଯୁକ୍ତମାର୍ଗେ ସଖ୍ୟା ସାର୍ଦ୍ଧଂ ସମାଗଚ୍ଛ । ୭ ।

ଅର୍ଥ—ହେ କନ୍ଦର୍ପ-ସୁନ୍ଦର ! ହେ କାମପୀଡ଼ିତ ! ହେ ପ୍ରେମର ବିଶ୍ୱାସପାତ୍ର ! ଅନ୍ୟବେଶକୁ ଧାରଣ କରି ଉଚିତ ରାସ୍ତାରେ ସଖୀସହିତ ତୁମେ ଆସ । ୭ ।

ପୃ-୪୦—(ଅନ୍ୱୟଃ) ହେ ଦେବି ! ବାଳେ ! ଅଦ୍ୟ ମମ ପୁଣ୍ୟଦିବସେ ଏବ, ଯତ୍ ତ୍ୱତ୍ ପାଦପଙ୍କଜଯୁଗଂ ଚ ବିଲୋକ୍ୟତେ, ମୁଗ୍ଧେ ! ସଦୟେ ! ରମ୍ୟାଢ଼ପୀନକଚନସ୍ତନସେବକଂ ମାଂ ଅଧରସୀଧୁଲବ୍ଧଂ ବିଧେହି । ।

ଅର୍ଥ—ହେ ଦେବ ! ହେ ବାଳେ ! ଅଜ ମୋର ପୁଣ୍ୟ ଦିବସରେ ତୁମ୍ଭ ପାଦପଦ୍ମ ଯୁଗଳକୁ ଦେଖୁଅଛୁ, ହେ ନୃପଧେ ! ସଦୟେ ! ସୁନ୍ଦର ଓ ଅତୁଳିତ ଜଘନ ଓ ସ୍ତନର ସେବକ ମୋତେ ଅଧରମଧୁ-ଭୋଗୀ କର । ୮ ।

ପୃ-୩୯—(ଅନ୍ୱୟଃ) ଘୃଣାକ୍ଷରସ୍ୟ ଏବ ଏତତ୍ ବଧାନଂ, ନୃପଜେ ! ବଧାତ୍ରା ତ୍ୱଂ ବିନିର୍ମିତା, ବିଧେଃ ତୁ ସୁକୌଶଳତ୍ୱଂ ଜାନାମି, ଯଦ ଇଦ୍ୟଂ ସରୂପତା ଅନ୍ୟା କୃଶାଙ୍ଗେ । ୯ ।

ଅର୍ଥ—ହେ ନୃପନନ୍ଦନ ! ଘୃଣାକ୍ଷର ନ୍ୟାୟରେ ବିଧାତା ତୁମକୁ ନିର୍ମାଣ କରିଅଛି । ବିଧାତାର ଉତ୍ତମକୌଶଳ ମୁଁ ଜାଣିଛୁ, ଯଦି ଏହି ସାରୂପ୍ୟ ଅନ୍ୟଠାରେ ଦେଖାଯାଏ । ୯ ।

ପୃ-୪୧—(ଅନ୍ୱୟଃ) ହେ ମଦନସୁନ୍ଦର ! ସ୍ୱଦର୍ଶନାତ୍ ପୂର୍ବଂ ତ୍ୱୟା ଏତତ୍ ଉକ୍ତଂ, ନନୁ ଚ ଏବ ସମ୍ପ୍ରତି ଦୃଷ୍ଟଂ, ତ୍ୱଂ ସ୍ୱଭବନଂ ତ୍ୱରିତଂ ଗଚ୍ଛ, ପ୍ରାଣେଶ୍ୱରୀଂ ପଶ୍ୟ ଚ, ତବ ମନୋରଥସିଦ୍ଧିଃ ଅସ୍ତୁ । ୧୦ ।

ଅର୍ଥ—ହେ କାମାଭିରାମ ! ଦର୍ଶନ ନିମିତ୍ତ ପୂର୍ବେ ତୁମେ ଏହା କହିଥିଲ, ବର୍ତ୍ତମାନ ତୁମ୍ଭେ ଦେଖିଲ, ଶୀଘ୍ର ତୁମ୍ଭେ ନିଜଗୃହକୁ ଗମନ କର । ପ୍ରାଣେଶ୍ୱରୀକୁ ମଧ୍ୟ ଦେଖ, ତୁମ୍ଭର ମନୋରଥ ସିଦ୍ଧ ହେଉ ।୧୦।

ପୃ-୪୨—(ଅନ୍ୱୟଃ) ହେ ଭୂପତିଜେ ! ତ୍ୱଂ ଏବ ମେ ନିବାସଃ, ଜୀବେଶ୍ୱରି ! ମେ ଅନ୍ୟା ନାସ୍ତି ତ୍ୱଂ ଏବ, ତେ ପ୍ରସନ୍ନତା ସକଳାର୍ଥସିଦ୍ଧିଃ, ମନୋଜସମ୍ମୋହନି ! ମାଂ ତ୍ୱଂ ଅବ । ୧୧ ।

ଅର୍ଥ—ହେ ନୃପନନ୍ଦିନି ! ତୁମେ ମୋର ନିକେତନ, ହେ ଜୀବେଶ୍ୱରି ମୋର ଅନ୍ୟ କେହି ନାହିଁ, ତୁମ୍ଭେ ମାତ୍ର, ତୁମ୍ଭର ପ୍ରସନ୍ନତା, ସକଳ ପ୍ରୟୋଜନ-ସିଦ୍ଧିକାରଣୀ ହେ କାମ ମୋହିନି ! ତୁମ୍ଭେ ମୋତେ ରକ୍ଷା କର । ୧୧ ।

ପୃ-୪୩—(ଅନ୍ୱୟଃ) ହେ ଅଙ୍ଗରଙ୍ଗେ ! ତବ ନିଶିତକଟାକ୍ଷକ୍ଷିପ୍ତବାଣ-ବ୍ରଣାର୍ତ୍ତିଂ ମମ ତନୁଂ ଔଷଧେନ ଜୀବୟସି, କଃ ଅପରଃ ବା

ସ୍ତନଜଘନବଲଗ୍ନାଲିଙ୍ଗନଂ ଗାତ୍ରଲେପଂ ତ୍ୱଦଧରମଧୁପାନଂ
କ୍ଷେପୟେତ୍ତୁ । ୧୨ ।

ଅର୍ଥ—ହେ ଅନୁରଙ୍ଗିଣି ! ତୋର କଟାକ୍ଷ କଟାକ୍ଷ ପ୍ରେରିତ ବାଣ-
ବ୍ରଣଦ୍ୱାରା ପୀଡ଼ିତ ମୋର ଶରୀରକୁ ଔଷଧଦ୍ୱାରା ଅବଦାନ କରୁଅଛ ।
ଅନ୍ୟ କଅ ଅବା ଶରୀରର (ଚନ୍ଦନ) ଲେପ ତୁଲ୍ୟ ସ୍ତନଜଘନ-
ସଂଲଗ୍ନ ଆଲିଙ୍ଗନକୁ ଓ ତୁମ୍ଭର ଅଧରସୁଧାପାନକୁ ଉପସ୍ଥାର
କରିବ । ୧୨ ।

ପୃ-୪୩—(ଅନ୍ୱୟଃ) ମଦନାତୁରା ସମୁଦିତା ସଞ୍ଜାତଲଜ୍ଜାଭୟା ନୃପସୁତା
କ୍ରୀଡ଼ାର୍ଥଂ କାନ୍ତଂ କେଳିନିକେତନଂ ନୀତ୍ୱା, ତୁ ଶଯ୍ୟୋପରି
ଅଗୁରୁଚନ୍ଦନଂ ସଂସ୍ଥାପ୍ୟ, ସୁକୁସୁମଂ କର୍ପୂରସୁଗଂ ପୁରେ ଦତ୍ୱା,
ସଖୀକରଂ ପୀଡ୍ୟ, ପ୍ରହସିତା, ତେନ ନାୟକେନ ଚଂ
(ସଖ୍ୟଃ) ଭୂଷିତାଃ । ୧୩ ।

ଅର୍ଥ—କାମପୀଡ଼ିତା ଉତ୍କଣ୍ଠିତା, ଲଜ୍ଜା ଓ ଭୟଯୁକ୍ତା
ନୃପନନ୍ଦନା କ୍ରୀଡ଼ାନିମିତ୍ତ କାନ୍ତଙ୍କୁ କେଳିଗୃହକୁ ନେଇ, ଶଯ୍ୟା ଉପରେ
ଅଗୁରୁଚନ୍ଦନକୁ ରଖି, ଉତ୍ତମ ପୁଷ୍ପ ଓ କର୍ପୂରଯୁକ୍ତ ଥିବା ସମ୍ମୁଖରେ
ଦେଇ, ସଖୀ ହସ୍ତକୁ ପୀଡ଼ିତ କରି ହସିଥିଲା. ତଦନନ୍ତର ନାୟକ
ସଖୀମାନଙ୍କୁ ଭୂଷିତ କରିଥିଲେ । ୧୩ ।

ପୃ-୪୪—(ଅନ୍ୱୟଃ) ହ ବହିର୍ଗତାଂ ପ୍ରିୟସଖୀଂ (ଅତଃ) ସବ୍ରୀଡ଼ାଂ (ତାଂ)
ଦୃଷ୍ଟ୍ୱା, ସ କାମାତୁରଃ ତନ୍ୱ୍ୟାଃ ପୀନଘନସ୍ତନୋରୁଜଘନାତ୍
ଚୀନାଂଶୁକଂ ଅପକୃଷ୍ୟ, ନୃପଭୂବଃ ଆଲିଙ୍ଗନଚୁମ୍ବନଂ କୃତ୍ୱା,
ଅଧରଂ ପୀତ୍ୱା, ତାଡ଼ୟନ୍, ମର୍ଦ୍ଦନ୍, ଦନ୍ତନଖକ୍ଷତାନି, ତତଃ
ନାଭ୍ୟାଃ କ୍ଷୋଭଂ ଚ କୁରୁତେ । ୧୪ ।

ଅର୍ଥ—ପ୍ରିୟସଖୀଗଣ ଅନ୍ତରେ ହେଲାରୁ ସଲଜ୍ଜା (ନାୟିକା)କୁ
ଦେଖି କାମପୀଡ଼ିତ ସେହି (ନାୟକ) ତନ୍ୱଙ୍ଗୀର, ମାଂସଳ ଓ ସାନ୍ଦ୍ର
ସ୍ତନ ଜଘନ ଓ ଉରୁ ପ୍ରଦେଶରୁ ସୂକ୍ଷ୍ମବସ୍ତ୍ରକୁ ଅପସାରଣ କରି,
ରାଜନନ୍ଦିନୀର ଆଲିଙ୍ଗନ ଓ ଚୁମ୍ବନ କରି, ଅଧର ପାନ କରି, ତାଡ଼ନ

ଓ ମର୍ଦ୍ଦନସୁଖଙ୍କ ଦନ୍ତନଖକ୍ଷତ, ତଦନନ୍ତର ନାଭରେ ସୋଭ ମଧ୍ୟ କଲେ । ୧୦ ।

ପୃ-୪୫—(ଅନ୍ୱୟଃ) ଜଘନସ୍ଥଳଂ ସ୍ତନଯୁଗଂ ଛାଦର୍ଶେଷ (ଅତଃ) ଲଜ୍ଜାଭର ବ୍ୟାକୁଳା ସା ବାଳା କବରୀଷ୍ଟପୁଷ୍ପକଳସନ୍ତାଳାଦ୍ୱତେ ଦୀପକେ (ସତି) ରଶ୍ମିଦ୍ରବ୍ୟସୁତେଜସା ଅସ୍ୟଂ ଦୀପଃ ଅନ୍ୟତ୍ ଶୂନ୍ୟଂ ସମଭବତ୍, (ସ୍ୱକୀୟଂ) କାନ୍ତିର୍ଣାଧିକ୍ୟଂ ଦୃଷ୍ଟ୍ୱା ସ୍ମିତମୁଖୀ, ତତ୍ ତ୍ୟକ୍ତଲଜ୍ଜା ଅଭବତ୍ । ୧୫ ।

ଅର୍ଥ—(ବସ୍ତ୍ରରହିତ) ଜଘନ ଓ ସ୍ତନଯୁଗକୁ ଦେଖି, ଏଣୁ ଅଧିକ ଲଜ୍ଜାବଶତଃ ବ୍ୟାକୁଳତା, ସେହି ବାଳା ଦୀପ ପ୍ରତି କେଶଗୁଚ୍ଛସ୍ଥ ପୁଷ୍ପ-ଶୋଭିତମାଳାକୁ ଅହତ କଲାରୁ, ଶୋଭମାନରତ୍ନକାନ୍ତିଦ୍ୱାରା ଏହି ଦୀପ ବିଶେଷ ରୂପରେ ଦେଦୀପ୍ୟମାନ ହେଲା, ତହିଁରେ ନିଜର କାନ୍ତିବର୍ଣ୍ଣର ଆଧିକ୍ୟକୁ ଦେଖି, ସ୍ମିତମୁଖୀ ସେହି ବାଳା ତ୍ୟକ୍ତଲଜ୍ଜା ହୋଇଥିଲା । ୧୫ ।

ପୃ-୪୬—(ଅନ୍ୱୟଃ) ହେ ସୁମନୋହରଂ ମଧୁରାଳାପଂ ରଣତ୍କାରତଃ ସାନ୍ଦ୍ରଂ ଚଳତ୍ପାଦୟୋଃ ଅନମ୍ରଂ ଇଦଂ ନୂପୁରଦ୍ୱୟଂ ସଦ୍ୟୋଜ୍ୟଂ, ଅଶ୍ରୁତଃ ମମ ସୁରତୋପସ୍ଥୁରକଥନଂ ପ୍ରେଙ୍ଖୈଃ କରୋତି । ତ୍ୱଂ ପଶ୍ୟ, ତତ୍ ବିଶ୍ୱାସାତ୍ ହି ବହୁସ୍ପୃଷ୍ଟଂ ଫଳତି, କସ୍ୟ ଏବ ବିଶ୍ୱସ୍ୟତେ । ୧୬ ।

ଅର୍ଥ—ମନୋହର, ସୁଶବ୍ଦ, ରଣତ୍କାରବଶତଃ ସଘନ, ଚଞ୍ଚଳ ପାଦରେ ନମ୍ରୀଭୂତ ଏହି ନୂପୁରଯୁଗକୁ ଭଲଭାବରେ ଯୋଜନା କର, ଅଶ୍ରୁତ ହୋଇ ମଧ୍ୟ ମୋର ସୁରତ ଉପସ୍ଥୁରକଥନକୁ ସ୍ପଷ୍ଟ କରୁଅଛି । ତୁମ୍ଭେ ଦେଖ, ତାକୁ ବିଶ୍ୱାସବଶତଃ ବହୁବାର କଲେ ମଧ୍ୟ ଧ୍ୱନିତ ହେଉଅଛି, କାହାଠାରେ ବିଶ୍ୱାସ କରଯିବ । ୧୬ ।

ପୃ-୪୭—(ଅନ୍ୱୟଃ) ସୁଭଗେ ! ଅତିକ୍ଷେଳେ ! ଅଜ ଏତତ୍ ବିପରୀତଂ ଶୃଙ୍ଗାରଂ ସମାଚରନ୍ତ୍ୟାଃ ତେ ଗଣ୍ଡସ୍ଥଳଂ କୁଣ୍ଡଳ-ଛଦ୍ମରୂପଃ ସକାମୀ ଶଶୀ ଚୁମ୍ବତି, ମନ୍ୟେ । ୧୭ ।

ଅର୍ଥ—ହେ ସୁଭଗେ ! ହେ ଅତି ଚପଳେ ! ଏଠାରେ ଏହି ବିପରୀତ ରତିକୁ କରୁଥିବା ତୋର ଗଣ୍ଡଦେଶକୁ କୁଣ୍ଡଳ ବ୍ୟାଜରେ ସେହି କାମୀ ଚନ୍ଦ୍ର କୋଧେ ଚୁମ୍ବନ କରୁଛି ? । ୧୭ ।

ପୃ-[illegible]—(ଅନ୍ୱୟଃ) ପ୍ରିୟେ ! ତେ ଅଦ୍ୟ ଉତ୍ତୁଙ୍ଗସ୍ତନଯୁଗ୍ମପୀଡ଼ିତ-
ଦୃଢ଼ାଶ୍ଳେଷଣ ଦନ୍ତାଘାତନଖକ୍ଷତୈଃ, ସୁମଧୁରାଳାପୈଃ,
ପ୍ରକୈଃ ଚୁମ୍ବୈଃ ଚ, ନାନାବନ୍ଧବିନୋଦିତଃ ଅସ୍ମି, ଏତତ୍
କୃତେ ମେ ଗାତ୍ରଂ ସାର୍ଥକଂ କୁରୁଷେ, ହେ ! ସୁରୁଷାୟିତେନ
କନ୍ଦର୍ପବାଣବ୍ୟଥାଂ (ମେ) ହର । ୧୮ ।

ଅର୍ଥ—ହେ ପ୍ରିୟେ ! ତୋର ଅତି ଉନ୍ନତ ସ୍ତନଯୁଗ୍ମର ଦୃଢ଼ାଲିଙ୍ଗନଦ୍ୱାରା, ଦନ୍ତ ଓ ନଖକ୍ଷତଦ୍ୱାରା, ମଧୁରବଚନଦ୍ୱାରା, ପ୍ରକାସ୍ୟ ଚୁମ୍ବନ ଦ୍ୱାରା ମଧ୍ୟ, ନାନା ବନ୍ଧଦ୍ୱାରା ମୁଁ ବିନୋଦିତ, ଅତଃ ମୋର ଶରୀରକୁ ସାର୍ଥକ କରୁଛୁ । ଅହେ ! ସୁରୁଷାୟିତ ରତିଦ୍ୱାରା ମୋର କନ୍ଦର୍ପବାଣବାଧାକୁ ଦୂର କର । ୧[illegible] ।

ପୃ-୧୭—(ଅନ୍ୱୟଃ) ପ୍ରିୟେ ! ମୁଖରଂ କଂଣଂ ଚଂ କର୍କଶଂ ନିଃଶବ୍ଦଂ
ଏତତ୍ ନୂପୁରଯୁଗଂ ମେ କୃତେ ଯଦ୍ ବ୍ୟକ୍ତଂ ଭବତି,
[illegible]ଣବତୀ ସୁପ୍ରୀତିକାରିଣୀ ଅପି ଗୋପ୍ୟସ୍ଥା କଟିମେଖଳା
ଅଣ୍ଡିତାନ୍ ମଧ୍ୟସ୍ଥାନ୍ ମଧୁରସ୍ୱନୈଃ ବିଜ୍ଞାପୟତି ।୧୯।

ଅର୍ଥ—ହେ ପ୍ରିୟେ ! ମୁଖର କ୍ୱଣରହିତ କଠୋର ଓ ଶବ୍ଦରହିତ ଏହି ନୂପୁରଯୁଗ ମୋପାଇଁ ଯେଉଁ ସ୍ଫୁଟ ହେଉଅଛି । ଗୁଣଯୁକ୍ତା ଆନନ୍ଦ-ଦାୟିନୀ ଓ ଗୋପ୍ୟସ୍ଥାନସ୍ଥିତା କଟୀର ମେଖଳା ଅଣ୍ଡିତ ମଧ୍ୟସ୍ଥମାନଙ୍କୁ ମଧୁର ଧ୍ୱନିଦ୍ୱାରା ଜଣାଉଅଛି ।୧୯।

ପୃ-୪୮—(ଅନ୍ୱୟଃ) ହେ କୁଟିଲନନେ ! ଅଦ୍ୟ ଯତ୍ ଅଧରାତ୍ ଅମୃତଂ
ସ୍ୱାଦିତଂ ତତ୍ବକ୍ତଂ, ଯାଭ୍ୟାଂ ତେ ନିର୍ମଳରହିତଂ ସର୍ବାଙ୍ଗଂ
ଅବଲୋକ୍ୟତେ (ତେ) ନୟନେ, ତୌ କଠିନସ୍ଥଳଂ ସ୍ତନଯୁଗଂ
ସଂସେବ୍ୟମାନୌ ଚ ତୌ ହସ୍ତୌ, ଯତ୍ ତପସାର୍ଜିତଂ
ରତିସୁଖଂ ପ୍ରାପ୍ତାଙ୍ଗସଙ୍ଗଂ ଚ ତତ୍ ଗାତ୍ରମ୍ । ୨ ।

ଅର୍ଥ—ହେ ସୁନ୍ଦରମୂର୍ତ୍ତି ! ଯେଉଁ ମୁଖ ଅଛ (ତୁମ) ଅଧରରୁ ଅମୃତ ଆସ୍ୱାଦନ କରିଛି ସେହି ମୁଖ ଧନ୍ୟ, ଯେଉଁ ନୟନଦ୍ୱନ୍ଦ୍ୱ ତୁମ୍ଭର ବସ୍ତ୍ରରହିତ ସର୍ବାଙ୍ଗକୁ ଅବଲୋକନ କରୁଅଛି ସେହି ନୟନଯୁଗ୍ମ ଧନ୍ୟ, ଯେଉଁ ହସ୍ତଯୁଗ୍ମ ଜଘନସ୍ଥଳ ଓ ସ୍ତନଯୁଗ୍ମର ସେବା କରୁଅଛି ସେହି ହସ୍ତଯୁଗ୍ମ ଧନ୍ୟ, ଯେଉଁ ଶରୀର ତପସ୍ୟାଦ୍ୱାରା ଲବ୍ଧ୍ୟ ରତିସୁଖ ଓ ଅଙ୍ଗସଙ୍ଗକୁ ପ୍ରାପ୍ତ କରିଅଛି ସେହି ଶରୀର ଧନ୍ୟ ।୨୦।

ପୃ-୪୮—(ଅନ୍ୱୟଃ) ତ୍ୱଦ୍ବିବ୍ୟପୀନସ୍ତନଯୁଗ୍ମଂ ଆସ୍ୟଂ, ତ୍ୱଚ୍ଚାରୁରମ୍ୟଂ ଜଘନସ୍ଥଳଂ ଚ, ତ୍ୱତ୍ପୀବରଂ ରମ୍ୟନିତମ୍ବବିମ୍ବଂ ଅତ୍ର ଲୋକେ ଧନ୍ୟଃ କଥଂ କ୍ରୀଣୀତ ।୨୧।

ଅର୍ଥ—ତୁମ୍ଭର ସୁନ୍ଦର ଓ ପୃଥୁଳ ସ୍ତନଯୁଗ୍ମ, ମୁଖ, ତୁମ୍ଭର ଅତିରମ୍ୟ ଜଘନସ୍ଥଳ ଓ ତୁମ୍ଭର ସୁନ୍ଦରନିତମ୍ବବିମ୍ବକୁ ଏହି ସଂସାରରେ ପୁଣ୍ୟବାନ୍ ଜନ କିପରି ଲଭିବ ।୨୧।

ପୃ-୪୯—(ଅନ୍ୱୟଃ) ନିଶାବଶେଷଃ, ତବ ରମଣାଭିଳାଷଃ ସିଦ୍ଧଃ ଅସୀତ୍, ଅତଃ ପରଂ ତୁ କିଂ, ଯଥା କଶ୍ଚିତ୍ ଜନଃ ଅପି ନ ଜାନାତି, ତଥା ତ୍ୱଂ ଯାହି, ପୁନଃ ଏହି ।୨୨।

ଅର୍ଥ—ରାତ୍ରିର ଅବସାନ ହେଲା, ତୁମ୍ଭର ରମଣ ଇଚ୍ଛା ପୂର୍ଣ୍ଣ ହେଲା, ଆଉ କ'ଣ ?, ଯେପରି କୌଣସି ଲୋକ ମଧ୍ୟ ନ ଜାଣେ, ସେପରି ତୁମ୍ଭେ ଯାଅ ଓ ପୁଣି ଆସ ।୨୨।

ପୃ-୪୯—(ଅନ୍ୱୟଃ) ହେ ଦେବ ! ତବ ଏଷ ଅନୁଗ୍ରହଃ ମେ ଅସ୍ତୁ, ତ୍ୱଦଙ୍ଗସଙ୍ଗାତ୍ ହି ଜନ୍ମ ସଫଳଂ, ନବପ୍ରିୟାୟାଃ ବରହାସିନ୍ୟା ମନୋବ୍ୟଥାଭେତ୍ତଂ କିଂ ଅନ୍ୟତ୍ ଅସ୍ତି ।୨୩।

ଅର୍ଥ—ହେ ଦେବ ! ତୁମ୍ଭର ଏହି ଅନୁଗ୍ରହ ମୋ ପ୍ରତି ହେଉ, ତୁମ୍ଭର ଅଙ୍ଗସଙ୍ଗରୁ ମୋର ଜନ୍ମ ସଫଳ ହେଲା, ନବୀନ ପ୍ରିୟାର ବରହାସ୍ୟଯୁକ୍ତ ମନୋବ୍ୟଥାର ଚିକିତ୍ସା କ'ଣ ଅନ୍ୟ ଅଛି ।୨୩।

ପୃ-୫୦—(ଅନ୍ୱୟଃ) ସ୍ନାନଂ ନ, ନ ଚ ଭୋଜନଂ, ପଠନଂ ନ, ପ୍ରିୟେ ଅନ୍ୟତ୍ ସୌଖ୍ୟଂ ନ, ଅନ୍ୟସ୍ତ୍ରୀଜନସେବନଂ ନ, ନ ଚ କଥା, ମମ ନିଦ୍ରା ଅପି ନ ଅସ୍ତି, କିନ୍ତୁ ଧ୍ୟାନେନ ଚେତଃ-ସ୍ଥିତାଂ ତ୍ୱାଂ ସତତଂ ପରିଚିନ୍ତୟାମି, କାନ୍ତେ ! ତବ ସ୍ୱପ୍ନାଲୋକନକାମକେଳିବର୍ତ୍ମନା ଜୀବାମି ।୫୦।

ଅର୍ଥ—ସ୍ନାନ ନାହିଁ, ଭୋଜନ ନାହିଁ, ପଠନ ମଧ୍ୟ ନାହିଁ, ହେ ପ୍ରିୟେ ! ଅନ୍ୟକ ସୁଖ ମଧ୍ୟ ନାହିଁ, ଅନ୍ୟ ସ୍ତ୍ରୀଲୋକ ସେବା ନାହିଁ, କଥା ନାହିଁ ଓ ମୋର ନିଦ୍ରା ମଧ୍ୟ ନାହିଁ, କିନ୍ତୁ ଧ୍ୟାନବଶତଃ ଚିତ୍ତସ୍ଥିତ ତୁମ୍ଭକୁ ସର୍ବଦା ଚିନ୍ତନ କରୁଅଛି, ହେ କାନ୍ତେ ! ତୁମ୍ଭର ସ୍ୱପ୍ନଦୃଷ୍ଟ-କାମକ୍ରୀଡ଼ାବର୍ତ୍ମରେ ମୁଁ ଜୀବନଧାରଣ କରୁଛି ।୫୦।

ପୃ-୫୧—(ଅନ୍ୱୟଃ) ତବ ବିଚ୍ଛେଦତଃ ମେ ରାତ୍ରିଃ କାଳଯୁଗୋପମା, ମଳୟଜଃ ଗନ୍ଧାନିଳଃ କିଂ ବିଷଂ, ସୋମଃ ସୂର୍ଯ୍ୟ ଇବ ଅଭବତ୍, ମଳୟଜାବଲେପଃ ସ୍ଫୁଲିଙ୍ଗୋପମଃ, ଜନ୍ତୁଃ ସୁସ୍ୱର-ବାଦ୍ୟଗୀତପରଭୃତ୍ପାରାବତାଦିଧ୍ୱନିଃ କର୍ଣ୍ଣଯୁଗଳେ ବଜ୍ରସ୍ୟ ଅଦ୍ଭୁତଃ ଏବ ।୫୧।

ଅର୍ଥ—ତୋ ବିରହରେ ମୋପାଇଁ ରାତ୍ରି କାଳଯୁଗ ସଦୃଶ, ମଳୟ ପର୍ବତର ସୁଗନ୍ଧପବନ ଯେପରିକି ବିଷ, ଚନ୍ଦ୍ର ମଧ୍ୟ ସୂର୍ଯ୍ୟ ସଦୃଶ ହୋଇଥିଲେ, ଚନ୍ଦନଲେପ ଅଗ୍ନିକଣ ସଦୃଶ, ଜଗତର ସୁମଧୁର ବାଦ୍ୟଗୀତ ଓ କୋକିଳପାରାବତାଦିର ଶବ୍ଦ କର୍ଣ୍ଣରେ ବଜ୍ରତାଡ଼ନ ସମ ପ୍ରତୀତ ହୁଏ ।୫୧।

ପୃ-୫୨—(ଅନ୍ୱୟଃ) ତବ ବିଚ୍ଛେଦାତ୍ ମେ ଚନ୍ଦ୍ରଃ ଦ୍ୱାଦଶାର୍କସ୍ମରଃ ସମଭବତ୍, ରାତ୍ରିଃ ଯୁଗାନାଂ ଶତଂ, ପିଷ୍ଟଂ ବିଲେପନଂ ଉଗ୍ରରସଂ, ଅହୋ ମଳୟାନିଳଃ ଧୂମ୍ରାନିଳଃ, ଗୀତାଦିଧ୍ୱନିଃ ଏବ ବଜ୍ରସଦୃଶଃ, ଶ୍ରୁତୌ କିଂ କାଳକୂଟଃ, ବିତାନଂ ଗୃହଂ ଅରଣ୍ୟମ୍ ।୫୨।

**ଅର୍ଥ**—ତୁମ ବିରହରେ ମୋପାଇଁ ଚନ୍ଦ୍ର ଦ୍ୱାଦଶସୂର୍ଯ୍ୟ ହୋଇଲେ, ଗନ୍ଧ ପ୍ରଗଣିତ ହେଲା, ଉଶୀର ଲେପନ ମଧ୍ୟ ତିକ୍ତରସ ହେଲା, ଅଶ୍ଚର୍ଯ୍ୟ ମଳୟାନିଳ ହୁତାଶାଗ୍ନି ତୁଲ୍ୟ, ଗୀତାଦଧ୍ୱନି ମଧ୍ୟ ବଜ୍ରସଦୃଶ, ଓ ଶ୍ରବଣେନ୍ଦ୍ରିୟରେ କଷ୍ଟ, ସୁନ୍ଦର ଗୃହ ଅରଣ୍ୟ ହେଲା ।୨୬।

ପୃ-୫୨—(ଅନ୍ୱୟଃ) ହେ ମାନିନ ! ଦେବ ! ଦୟିତେ ! ମିଥ୍ୟାବଚଃ ଶ୍ରୂୟତେ, ମାନଂ ମୁଞ୍ଚ, ଯଦି ବଚଃ ତ୍ୱୟା ସତ୍ୟଂ ମନ୍ୟତେ, (ତର୍ହି) ନିଜସେବକେ କିଂ କୋପଃ, ମମ ଦୋଷ ଚେତ୍ ଦୋର୍ଭ୍ୟାଂ ଅଶୁ ବନ୍ଧନଂ, ଦନ୍ତଦଳନଂ, ପୀନସ୍ତନାସ୍ଫାଳନଂ, ତେ କଟାକ୍ଷବିଶିଖୈଃ ଶସ୍ତ୍ରୈଃ ପ୍ରହାରଂ କୁରୁ । ୨୭ ।

**ଅର୍ଥ**—ହେ ମାନିନ ! ଦେବ ! ପ୍ରିୟେ ! ମିଥ୍ୟାବଚନକୁ ତୁମ୍ଭେ ଶୁଣୁଅଛ, ମାନକୁ ଛାଡ, ଯଦି ବଚନକୁ ତୁମ୍ଭେ ସତ୍ୟ ବୋଲି ସ୍ୱୀକାର କରୁଅଛ, ତେବେ ନିଜ ସେବକ ବିଷୟରେ ରାଗ କ'ଣ, ମୋର ଯଦି ଦୋଷ, ତେବେ ଶୀଘ୍ର ବାହୁଦ୍ୱାରା ବନ୍ଧନ, ଦନ୍ତରେ ଦଶନ, ପୀନସ୍ତନ-ଦ୍ୱାରା ତାଡନ, ତୁମ୍ଭର କଟାକ୍ଷବାଣରୂପକ ଶସ୍ତ୍ରଦ୍ୱାରା ପ୍ରହାର କର ।୨୭।

ପୃ-୫୩—(ଅନ୍ୱୟଃ) ଅତିଗୁପ୍ତେ ସୁରମ୍ୟେ ହର୍ମ୍ୟେ ପରମପ୍ରିୟାଭିଃ ସଖୀଭିଃ ଯୁକ୍ତା ସା ନାନାକଥାକୌତୁକକେଳିଭିଃ ତେନ ସାର୍ଦ୍ଧଂ ଏବ ତୁ ନିତ୍ୟଂ ରମତେ ।୨୮।

**ଅର୍ଥ**—ଅତ୍ୟନ୍ତଗୁପ୍ତ ସୁନ୍ଦର ଭବନରେ ପରମପ୍ରିୟା ସଖୀଯୁକ୍ତା ସେହି ଲକ୍ଷାବତୀ ନାନାକଥାକୌତୁକକ୍ରୀଡାଦ୍ୱାରା ତାହା ସହିତ ନିତ୍ୟ କ୍ରୀଡା କଲେ । ୨୮ ।

ପୃ-୫୪—(ଅନ୍ୱୟଃ) କାମାର୍ତ୍ତିଃ ନବଯୌବନଃ କବିବରଃ ନାନାବନ-ବିନୋଦନିର୍ଝରବିଚିକ୍ରୀଡାରସୈଃ ଅନ୍ୱିତଃ, ଭୂପାଳପୁତ୍ର୍ୟା ସମଂ ସ୍ଥିତ୍ୱା, ଅନ୍ତଃପୁରେ ତଃ ବହୁଃ କାଳସ୍ଥିତଃ ଚୌରଃ, ରଜନ୍ୟୋଜ୍ଝିତୈଃ ସୁପୁରୁଷୈଃ ଉପାୟଜ୍ଞୈଃ ଗୁପ୍ତୈଃ ରକ୍ଷାଗତଃ ଜ୍ଞାୟତେ ।୨୯।

ଅର୍ଥ—କାମପୀଡ଼ିତ, ଯୁବକ, କବିଶ୍ରେଷ୍ଠ, ନାନାବନ୍ଧବନୋଦ-ପୂର୍ଣ୍ଣ ରତିକ୍ରୀଡ଼ାରସଯୁକ୍ତ, ରାଜପୁତ୍ରୀ ସହ ରହି, ଅନ୍ତଃପୁରରୁ ବାହାରେ ବୁଲୁଥିବା ସେହି ଚୋର (ନାୟକ)କୁ ଦେଖି ରାଜନୟଯୁକ୍ତ ପୁରୁଷଶ୍ରେଷ୍ଠ ଉପାୟ-ଚତୁର ଚରମାନେ ରାଜାଙ୍କ ଆଗକୁ ନେଲେ ।୨୯।

ପୂ-୫୫—(ଅନ୍ୱୟଃ) ତାନ୍ ଅପି ସେବକାନ୍ ରାଜା କ୍ରୁଧା ବହୁବିଧଂ ହୁଂକାରପୂର୍ବଂ ଚୌରଂ ଝଟିତି ଛିନ୍ଧି, ଇତିବଚନଂ ଉବାଚ, ଖଡ୍ଗଂ ସମାଦାୟ ଚ, ରାଜାଜ୍ଞା ସାହସାତ୍ ଭବନାତ୍ ବହିର୍ବିଳସିତଂ ତଂ ନୀତ୍ୱା, ଇଷ୍ଟଂ ଦେବତାଂ ସଂସ୍ମର ଇତି ବଚଃ ଉଚୁଃ, ସ ଚୌରଃ ଅବଦତ୍ । ୦।

ଅର୍ଥ—ସେହି ସେବକମାନଙ୍କୁ ମଧ୍ୟ ରାଜା କ୍ରୋଧରେ ନାନାପ୍ରକାର ହୁଁକାରପୂର୍ବକ 'ଚୋରକୁ ଶୀଘ୍ର ଛେଦନ କର', ଏପରି ବଚନ କହିଥିଲେ । ଖଡ୍ଗକୁ ଦେଲେ, ରାଜନଦେଶ ସାହସରେ ଗୃହ ବାହାରେ ବୁଲୁଥିବା ତାକୁ (ନାୟକକୁ) ନେଇ, ଇଷ୍ଟଦେବତାକୁ ସ୍ମରଣ କର, ଏପରି ବଚନ କହିଥିଲେ, (ତାପରେ) ସେ (ନାୟକ) କହିଥିଲା ।୫୦।

ପୂ-୫୨—(ଅନ୍ୱୟଃ) ଅଦ୍ୟ ଅପି କନକଚମ୍ପକଦାମଗୌରୀଂ, ଫୁଲ୍ଲାରବିନ୍ଦବଦନାଂ, ତନୁରୋମରାଜିଂ, ସୁପ୍ତୋତ୍ଥିତାଂ, ମଦନବିହ୍ୱଳଲସାଙ୍ଗୀ ତାଂ ପ୍ରମାଦଗଳିତାଂ ବିଦ୍ୟାଂ ଇବ ଚିନ୍ତୟାମି । ୧ ।

ଅର୍ଥ—ଏବେ ମଧ୍ୟ ସ୍ୱର୍ଣ୍ଣଲଚମ୍ପକମାଳାସଦୃଶ ଗୌରବର୍ଣ୍ଣା, ବିକଶିତ ପଦ୍ମମୁଖୀ, ସୂକ୍ଷ୍ମରୋମପଂକ୍ତିଯୁକ୍ତା, ଶୟନ କରି ଉଠୁଥିବା କାମ-ବିହ୍ୱଳବଶତଃ ଉଲ୍ଲସିତଅଙ୍ଗଯୁକ୍ତା, ତାକୁ ଅନବଧାନତା ବଶତଃ ଭୁଲି ଯାଇଥିବା ବିଦ୍ୟା ପରି ଚିନ୍ତା କରୁଅଛି । ୧ ।

ପୂ-୫୬—(ଅନ୍ୱୟଃ) ଅଦ୍ୟ ଅପି ଶଶିମୁଖୀଂ ନବଯୌବନାଢ୍ୟାଂ ପୀନସ୍ତନୀଂ ଗୌରକାନ୍ତିଂ ମନ୍ମଥଶରାନଳପୀଡ଼ିତାଙ୍ଗୀଂ ତାଂ ଯଦି ପୁନଃ ପଶ୍ୟାମି, (ତର୍ହି) ସମ୍ପ୍ରତି ଗାତ୍ରାଣି ଶୀତଳାନି କରୋମି । ୨ ।

ଅର୍ଥ—ଏବେ ମଧ୍ଯ ଚନ୍ଦ୍ରମୁଖୀ, ପୂର୍ଣ୍ଣନବଯୌବନା, ହୃଙ୍ଗସ୍ତନା, ଗୌରକାନ୍ତି, କାମବାଣଦ୍ବାରା ପୀଡ଼ିତାଙ୍ଗୀ, ତାକୁ ଯଦି ପୁନଃ ଦେଖିବି, ତେବେ ଶରୀରକୁ ସୁଶୀତଳ କରିବି । ୨ ।

ସୂ-୬୮—(ଅନ୍ବୟଃ) ଅଦ୍ୟ ଅପି କମଳସ୍ବତାକ୍ଷୀଂ, ପୀବରପୟୋଧର-
ଭାରଖିନ୍ନାଂ ତାଂ ଯଦି ପୁନଃ ପଶ୍ୟାମି, ବାହୁଯୁଗଳେନ
ସଂପୀଡ୍ୟ ଉନ୍ମତ୍ତବତ୍ ଇଷ୍ଟଂ ବକ୍ତ୍ରଂ ପିବାମି, ଯଥା ମଧୁକରଃ
କମଳଂ । ୩ ।

ଅର୍ଥ—ଏବେ ମଧ୍ଯ, କମଳ ସଦୃଶ ବିସ୍ତୃତନେତ୍ରୀ, ପୃଥୁଳ-
ସ୍ତନଭାରପୀଡ଼ିତା, ତାକୁ ଯଦି ପୁନଃ ଦେଖିବି, ତେବେ ଉଭୟ
ବାହୁଦ୍ବାରା ଗାଢ଼ାଲିଙ୍ଗନ କରି, ଉନ୍ମତ୍ତପରି ଅଭିଲଷିତ ମୁଖକୁ ପାନ
କରିବି, ଯେପରି ଭ୍ରମର କମଳପାନ କରେ । ୩ ।

ସୂ-୬୯—(ଅନ୍ବୟଃ) ଅଦ୍ୟ ଅପି ନିଧୁବନକ୍ଲମନିଃସହାଙ୍ଗୀଂ, ଆପାଣ୍ଡୁ-
ଗଣ୍ଡପତିତାଳକକୁନ୍ତଳାଂ, ପ୍ରଚ୍ଛନ୍ନପାପକୃତମନ୍ଥରଂ ଅବହନ୍ତୀଂ,
କଣ୍ଠାବସକ୍ତମୃଦୁବାହୁଲତାଂ ତାଂ ସ୍ମରାମି । ୪ ।

ଅର୍ଥ—ଏବେ ମଧ୍ଯ ରତିଶ୍ରମଜନିତକ୍ଲାନ୍ତାଙ୍ଗୀ, ପାଣ୍ଡୁର-
କପୋଳପତିତଚୂର୍ଣ୍ଣକୁନ୍ତଳା, ଗୁପ୍ତପ୍ରଣୟପାପଜନିତଶୈଥିଲ୍ୟଯୁକ୍ତା,
କଣ୍ଠସଂଲଗ୍ନ କୋମଳ ବାହୁଲତା, ତାକୁ ସ୍ମରଣ କରୁଅଛି ।୪।

ସୂ-୭୦—(ଅନ୍ବୟଃ) ଅଦ୍ୟ ଅପି ଅସିତାକ୍ଷୀଂ,ଶୃଙ୍ଗାରସାରକମଳାକର-
ରାଜହଂସୀଂ, ବ୍ରୀଡ଼ାବନମ୍ରବଦନାଂ, ଉଷସି ସୁରତଜାଗର-
ଘୂର୍ଣ୍ଣମାନଚର୍ଯ୍ୟଗ୍ବଲଭରଳତାରକଂ, ତାଂ ସ୍ମରାମି ।୫।

ଅର୍ଥ—ଏବେ ମଧ୍ଯ କୃଷ୍ଣନେତ୍ରୀ ଉତ୍କୃଷ୍ଟଶୃଙ୍ଗାର-
ସରୋବରର ରାଜହଂସୀ, ଲଜ୍ଜାବନତମୁଖୀ, ପ୍ରାତଃ କାଳରେ ରତିନିମ୍ନ
ଜାଗରଣବଶତଃ ଘୂର୍ଣ୍ଣିତ ଓ ବନ୍ଧକଭାବରେ ଗତିଶୀଳ ଚପଳ-
କନୀନିକାଯୁକ୍ତା ତାକୁ ସ୍ମରଣ କରୁଅଛି । ୫ ।

ପୃ-୫୯—(ଅନ୍ୱୟଃ) ଅଦ୍ୟ ଅପି ଶ୍ରବଣାୟତାକ୍ଷୀଂ, ଦୀର୍ଘବିରହ-ଶିଥିଳାଙ୍ଗଯଷ୍ଟିଂ ତାଂ ଯଦି ପୁନଃ ପଶ୍ୟାମି, ତତଃ ଅତିଗାଢ଼ଂ ଅଙ୍ଗୈଃ ସମୁପଗୂହ୍ୟ, ଅହଂ ନୟନେ ନ ଉନ୍ମୀଳୟାମି, ହୃଦି ତାଂ ସ୍ମରାମି । ୬ ।

ଅର୍ଥ—ଏବେ ମଧ୍ୟ କର୍ଣ୍ଣାୟତଲୋଚନା ଦୀର୍ଘ ବିରହରେ ଶିଥିଳ ଅଙ୍ଗଯୁକ୍ତା ତାକୁ, ଯଦି ପୁନଃ ଦେଖିବି, ତେବେ ନିବିଡ଼ଭାବରେ ଅଙ୍ଗଦ୍ୱାରା ଆଲିଙ୍ଗନ କରି, ମୁଁ ଆଖିକୁ ମେଲେଇବି ନାହିଁ, ହୃଦୟରେ ତାକୁ ସ୍ମରଣ କରୁଛି । ୬ ।

ପୃ-୬୦—(ଅନ୍ୱୟଃ) ଅଦ୍ୟ ଅପି ସୁରତତାଣ୍ଡବସୂତ୍ରଧାରୀଂ, ପୂର୍ଣ୍ଣେନ୍ଦୁ-ସୁନ୍ଦରମୁଖୀଂ, ମଦବିହ୍ୱଳାଙ୍ଗୀଂ, ତନ୍ୱୀଂ, ବିଶାଳଜଘନସ୍ତନ-ଭାରଖିନ୍ନାଂ, ବ୍ୟାଲୋଲକୁନ୍ତଳକଳାପବତୀଂ ତାଂ ସ୍ମରାମି ।୬ ।

ଅର୍ଥ—ଏବେ ମଧ୍ୟ ସୁରତତାଣ୍ଡବନୃତ୍ୟର ସୂତ୍ରଧାରିଣୀ, ପୂର୍ଣ୍ଣଚନ୍ଦ୍ର ସଦୃଶ ସୁନ୍ଦରମୁଖୀ, ଯୌବନ-ମଦଦ୍ୱାରା ବିହ୍ୱଳଅଙ୍ଗଯୁକ୍ତା, କୃଶା, ବିଶାଳ ଜଘନ ଓ ସ୍ତନଭାରବଶତଃ ଖିନ୍ନା, ଇତସ୍ତତଃ ଅଲ୍ଲୀତ କେଶସମୂହବତୀ ତାକୁ ସ୍ମରଣ କରୁଅଛି । ୭ ।

ପୃ-୬୧—(ଅନ୍ୱୟଃ) ଅଦ୍ୟ ଅପି ମସୃଣଚନ୍ଦନପଙ୍କମିଶ୍ରକସ୍ତୂରିକା-ପରିମଳୋତ୍ଥିତଗନ୍ଧଦେହାଂ ଶୟନେ ଅନ୍ୟୋନ୍ୟ-ଚଞ୍ଚୁପୁଟଚୁମ୍ବନଲଗ୍ନଖଞ୍ଜନଯୁଗାଭିରାମନୟନାଂ ତାଂ ସ୍ମରାମି ।୮

ଅର୍ଥ—ଏବେ ମଧ୍ୟ ଚିକ୍କଣଚନ୍ଦନରେ ମିଶ୍ରିତ କସ୍ତୂରିକା ପରିମଳ-ରେ ସୁଗନ୍ଧିତଶରୀରା, ଶୟନାବସ୍ଥାରେ ପରସ୍ପର ଚଞ୍ଚୁପୁଟରେ ଚୁମ୍ବନବଶତଃ ସଂଲଗ୍ନ ଖଞ୍ଜନଯୁଗ୍ମସଦୃଶ ମନୋହରନେତ୍ରୀ ତାକୁ ସ୍ମରଣ କରୁଛି । ୮ ।

ପୃ-୬୧—(ଅନ୍ୱୟଃ) ଅଦ୍ୟ ଅପି ପ୍ରିୟାୟାଃ ତତ୍ କନକଗୌର-କୃତାଙ୍ଗରାଗଂ, ପ୍ରସ୍ୱେଦବିନ୍ଦୁବିତତଂ, ରତିଖେଦବିଲୋଲନେତ୍ରଂ, ରାହୂପରାଗପରିମୁକ୍ତଂ, ଇନ୍ଦୁବିମ୍ବଂ, ଇବ ବଦନଂ, ଅନ୍ତ ସ୍ମରାମି । ୯ ।

ଅର୍ଥ—ଏବେ ମଧ୍ଯ ପ୍ରିୟତମାର ସେହି କନକସଦୃଶଗୌର-ଅର୍ଥାତ୍ କୁଙ୍କୁମଦ୍ୱାରା ଅଙ୍ଗରାଗଯୁକ୍ତା, ସ୍ୱେଦବିନ୍ଦୁବ୍ୟାପ୍ତା, ସୁରତ-ଖେଦରେ ଚଞ୍ଚଳନେତ୍ର, ରାହୁର ଗ୍ରାସରୁ ପରିମୁକ୍ତ ଚନ୍ଦ୍ରବିମ୍ବ ସଦୃଶ ମୁଖକୁ ମରଣ ସମୟରେ ସ୍ମରଣ କରୁଛି । ୯ ।

ପୃ-୬୬ (ଅନ୍ୱୟଃ) ଅଦ୍ୟ ଅପି କଥୁବନେ ମଧୁଗନ୍ଧପୂର୍ଣ୍ଣାଂ, ଲୁପ୍ତାଧରାଂ ବ୍ରଣତନୁଂ, ପ୍ରଚଳାୟିତାକ୍ଷୀଂ, କାଶ୍ମୀରପଙ୍କମୃଗନାଭି କୃତାଙ୍ଗରାଗାଂ, କର୍ପୂରପୂଗପରିପୂର୍ଣ୍ଣମୁଖୀଂ ତାଂ ସ୍ମରାମି ।୧୦।

ଅର୍ଥ—ଏବେ ମଧ୍ୟ ସୁରତକ୍ରୀଡାରେ ମଦ୍ୟଗନ୍ଧକୁସୁମଯୁକ୍ତା, ଅସ୍ୱାଦିତାଧରା, ବ୍ରଣଶରୀରା, ଚଞ୍ଚଳ ଓ ବିସ୍ମୃତନେତ୍ରୀ, କୁଙ୍କୁମପଙ୍କ ଓ କସ୍ତୁରୀଦ୍ୱାରା କୃତାଙ୍ଗରାଗା, କର୍ପୂରସୁଗନ୍ଧିତ ଅଦ୍ୱାରା ପୂର୍ଣ୍ଣମୁଖୀ, ତାକୁ ସ୍ମରଣ କରୁଛି । ୧୦ ।

ପୃ-୬୬—(ଅନ୍ୱୟଃ) ଅଦ୍ୟ ଅପି ତସ୍ୟାଃ ପ୍ରିୟାୟାଃ ବିପରୀତରତା-ଭିଯୋଗେ ତତ୍ ଆନ୍ଦୋଳନଶ୍ରମଜଲସ୍ଫୁଟସାନ୍ଦ୍ରବିନ୍ଦୁ-ମୁକ୍ତାଫଳପ୍ରକରବିଚ୍ଛୁରିତଂ କନକକୁଣ୍ଡଳକୁଣ୍ଡଂ ଆସ୍ୟଂ ସ୍ମରାମି । ୧୧ ।

ଅର୍ଥ—ଏବେ ମଧ୍ୟ ସେହି ପ୍ରିୟାର ବିପରୀତରତ ପ୍ରସଙ୍ଗରେ ଆନ୍ଦୋଳନଜନିତ ସ୍ୱେଦଜଳଦ୍ୱାରା ପ୍ରକଟିତ ସଘନ ବିନ୍ଦୁରୂପକ ମୁକ୍ତାସମୂହଦ୍ୱାରା ଦେଦୀପ୍ୟମାନ, ସ୍ୱର୍ଣ୍ଣକୁଣ୍ଡଳ ଯୁକ୍ତ ମୁଖ କୁ ସ୍ମରଣ କରୁଛି । ୧୧ ।

ପୃ-୬୭—(ଅନ୍ୱୟଃ) ଅଦ୍ୟ ଅପି ରହସି ମୟି ଯୁତବଚ୍ଛ, କୋପାତ୍ ଅନାଲପନ୍ତ୍ୟା ସ୍ଥିତପାଲମୁଖ୍ୟା, ଜୀବ ଇତି ମଙ୍ଗଲବଚଃ ପରିହୃତ୍ୟ, କଣ୍ଠେ କନକପଦ୍ମଂ କୃତଂ, ତତ୍ ମେ ମନସି ସଂପରିବର୍ତ୍ତତେ । ୧୨ ।

ଅର୍ଥ—ଏବେ ମଧ୍ୟ ରାତ୍ରିରେ ମୁଁ ଛିଙ୍କିବାରୁ କୋପରେ କଥା ନ କହି, ରାଜନନ୍ଦିନୀ 'ଜୀବ' ଏପରି ମଙ୍ଗଳ ବଚନକୁ ପରିହାର କରି ( ମୋ

କଥା ନ ଶୁଣିବାପାଇଁ ) କାନରେ ତାଙ୍କ ଦେଉଥିଲ । ସେହି କଥା ମୋ ମନରେ ଅଙ୍କିତ ହୋଇଅଛି । ୧୨ ।

ସୂ-୧୩—(ଅନ୍ୱୟଃ) ଅଦ୍ୟ ଅପି ତସ୍ୟାଃ ତତ୍ କ୍ଷଣସ୍ମିତଭଙ୍ଗୁର-ଦୃଷ୍ଟିପାତଂ, ରତିବିଭ୍ରମଗାତ୍ରଭଙ୍ଗମ୍; ବସ୍ତ୍ରାଞ୍ଚଳସ୍ଖଳନସଂକୁ-ଚସ୍ତନାଧରାନ୍ତଂ, ଦଶନଖଣ୍ଡନମଣ୍ଡନଂ ଦନ୍ତଚ୍ଛଦଂ ଚ ସ୍ମରାମି ।୧୩।

ଅର୍ଥ—ଏବେ ମଧ୍ୟ ତାହାର ସେହି ସ୍ମିତହାସରେ କ୍ଷଣିକଦୃଷ୍ଟିପାତ, (କଟାକ୍ଷ) ରତିବିଳାସ ହେତୁ ଗାତ୍ରଭଙ୍ଗ, ବସ୍ତ୍ରର ଅଞ୍ଚଳ ଖସିବାଦ୍ୱାରା ସୁନ୍ଦର ସ୍ତନଭାଗ ଓ ଦନ୍ତକ୍ଷତଶୋଭିତ ଓଷ୍ଠକୁ ସ୍ମରଣ କରୁଛି । ୧୩ ।

ସୂ-୧୪—(ଅନ୍ୱୟଃ) ଅଦ୍ୟ ଅପି ଅଶୋକକରପଲ୍ଲବରକ୍ତହସ୍ତଂ, ମୁକ୍ତାଫଳପ୍ରକରରଞ୍ଜିତଚୂଚୁକାଗ୍ରଂ, ଅନ୍ତଃସ୍ମିତୋଚ୍ଛ୍ୱସିତ-ପାଣ୍ଡୁରଗଣ୍ଡଭିତ୍ତିଂ, ଅଳସହଂସଗତିଂ ତାଂ ବଧୂଂ ସ୍ମରାମି । ୧୪ ।

ଅର୍ଥ—ଏବେ ମଧ୍ୟ ଅଶୋକ ବୃକ୍ଷର ପତ୍ର ସଦୃଶ ଯେଉଁ ତୋର (ରକ୍ତ) କରପଲ୍ଲବ ତା'ର ରକ୍ତକାନ୍ତି, ମୁକ୍ତାଗଣ ସଲଗ୍ନ ସ୍ତନାଗ୍ରଭାଗ, ଅନ୍ତଃସ୍ମିତଦ୍ୱାରା ପ୍ରସ୍ଫୁଟିତ ପାଣ୍ଡୁର କପୋଳଭାଗ, ଅଳସ ହଂସଗମନା ସେହି ପ୍ରିୟତମାକୁ ସ୍ମରଣ କରୁଛି । ୧୪ ।

ସୂ-୧୫—(ଅନ୍ୱୟଃ) ଅଦ୍ୟ ଅପି ଉତ୍ଥିତାୟାଃ, ଲଜ୍ଜାବଶାତ୍ ନ କୃତଂ ବ୍ରଜନ୍ତ୍ୟାଃ ତସ୍ୟାଃ, କରଧୃତଂ ଅଚ୍ଛଫେନରୁଚିରାମ୍ବରଂ, କୁସୁମରେଣୁସମୋରୁଦେଶେ ନ୍ୟସ୍ତଂ ତତ୍ ନଖରକ୍ଷତଲକ୍ଷ୍ମ ସ୍ମରାମି । ୧୫ ।

ଅର୍ଥ—ଏବେ ମଧ୍ୟ, ଶଯ୍ୟାରୁ ଉଠି ପଡ଼ିଥିବା ଏବଂ ଲଜ୍ଜାବଶତଃ ଅନ୍ୟ କେଉଁଆଡ଼େ ନ ଯାଉଥିବା, ତାହାର ଉଭୟକର ହାତରେ ଧରିଥିବା ଫେନ ସଦୃଶ ସୁନ୍ଦର ବସ୍ତ୍ର ଓ ପୁଷ୍ପରେଣୁସଦୃଶ ଉରୁଦେଶରେ ନ୍ୟସ୍ତ ସେହି ନଖକ୍ଷତ ଚିହ୍ନକୁ, ସ୍ମରଣ କରୁଅଛି । ୧୫ ।

ପୃ-୬୬—(ଅନ୍ୱୟଃ) ଅଦ୍ୟ ଅପି ବଧୂତକଜ୍ଜଳମ୍ଳେଳନେତ୍ରାଂ ପୃଥ୍ୱୀଂ
ପ୍ରଭୂତକୁସୁମାକୁଳକେଶପାଶାଂ ସିନ୍ଦୂରସଙ୍କୁଳିତମୌକ୍ତିକ-
ହାରଦଣ୍ଡାଂ ଅବଦ୍ଧହେମକଞ୍ଚିକାଂ ତାଂ ରହସି ସ୍ମରାମି । ୧୬ ।

ଅର୍ଥ—ଏବେ ମଧ୍ୟ କଜ୍ଜଳଯୁକ୍ତ ଚପଳନୟନା, ପୃଥୁଳା, ଅଧିକ ପୁଷ୍ପଯୁକ୍ତ କେଶପାଶା, ସିନ୍ଦୂରଲିପ୍ତ ମୌକ୍ତିକ-ହାରଯୁକ୍ତା ସ୍ୱର୍ଣ୍ଣର ଅଣ୍ଟାସିକୁଳିକୁ ପିନ୍ଧିଥିବା, ତାକୁ ଏକାନ୍ତରେ ସ୍ମରଣ କରୁଅଛି । ୧୬ ।

ପୃ-୬୭—(ଅନ୍ୱୟଃ) ଅଦ୍ୟ ଅପି ଗଳିତବନ୍ଧନକେଶପାଶାଂ, ସ୍ରସ୍ତସ୍ରଜଂ,
ସ୍ମିତସୁଧାମଧୁରାଧରୋଷ୍ଠୀଂ ପୀନୋନ୍ନତସ୍ତନଯୁଗୋପରି-
ଚୃଣୁଚମ୍ବନମୁକ୍ତାବଳୀଂ, ଲୋଲଦୃଶାଂ ତାଂ ରହସି
ସ୍ମରାମି । ୧୭ ।

ଅର୍ଥ—ଏବେ ମଧ୍ୟ ବନ୍ଧନରହିତ କେଶପାଶା, ଭ୍ରଷ୍ଟମାଳା ମନ୍ଦସ୍ମିତ ଶୋଭିତ ଅଧରୋଷ୍ଠୀ, ପୀନୋନ୍ନତ ସ୍ତନଯୁଗ୍ମ ଉପରେ ସଂଲଗ୍ନ ମୁକ୍ତାବଳୀ, ଚପଳନୟନା ତାକୁ ଏକାନ୍ତରେ ସ୍ମରଣ କରୁଅଛି । ୧୭ ।

ପୃ-୬୮—(ଅନ୍ୱୟଃ) ଅଦ୍ୟ ଅପି ରତ୍ନଦୀପମାଳାମୟୁଖପଙ୍କ୍ତିଭିଃ
ଦଳିତାନ୍ଧକାରେ ଧବଳବେଶ୍ମନି ଅଦ୍ୟ ସମ୍ମୁଖଦର୍ଶନାର୍ଥଂ
ରହସି ମେ ପ୍ରାପ୍ତା, ଲଜ୍ଜାଭୟାର୍ତ୍ତିନୟନାଂ ତାଂ ଅନୁ-
ଚିନ୍ତୟାମି । ୧ ।

ଅର୍ଥ—ଏବେ ମଧ୍ୟ ରତ୍ନନିର୍ମିତ ଦୀପପଂକ୍ତିର କିରଣସମୂହଦ୍ୱାରା ନଷ୍ଟାନ୍ଧକାର ଧବଳଗୃହରେ, ଆଜି ସମ୍ମୁଖଦର୍ଶନ ନିମନ୍ତ ଏକାନ୍ତରେ ଅଗତା ଲଜ୍ଜାଭୟଯୁକ୍ତନୟନା, ତାକୁ ପୁନଃ ସ୍ମରଣ କରୁଛି । ୧ ।

ପୃ-୬୮—(ଅନ୍ୱୟଃ) ଅଦ୍ୟ ଅପି ତତ୍ ବିରହବହ୍ନିନିପୀଡ଼ିତାଙ୍ଗୀଂ
ତନ୍ୱୀଂ କୁରଙ୍ଗନୟନାଂ ସୁରତୈକପାତ୍ରୀଂ ନାନା ବିଚିତ୍ରକୃତ-
ମଣ୍ଡନମଣ୍ଡିତାଙ୍ଗୀଂ ସୁଲକ୍ଷହଂସଗମନାଂ ତାଂ ରହସି
ସ୍ମରାମି । ୨ ।

ଅର୍ଥ—ଏବେ ମଧ୍ୟ ସେହି ବରହାଗ୍ନି ଦ୍ୱାରା ପୀଡ଼ିତାବସ୍ଥା, କୃଶାଙ୍ଗୀ, ମୃଗନୟନା, ସୁରତର ମୁଖ୍ୟପାତ୍ରୀ, ନାନା ଭୂଷଣମଣ୍ଡନଦ୍ୱାରା ଶୋଭିତାବସ୍ଥା, ରାଜହଂସଗମନା, ତାକୁ ଏକାନ୍ତରେ ସ୍ମରଣ କରୁଛି । ୨ ।

ପୃ-୬୧—(ଅନ୍ୱୟଃ) ଅଦ୍ୟ ଅପି ବହୁସିତାଂ ଭୁଜଗୁରନମ୍ରାଂ, ମୁକ୍ତାକଳାପବଳୟୀକୃତକଣ୍ଠମାଳାଂ, ଦନ୍ତାଙ୍କନମନ୍ଦିରଗତାଂ, କୁସୁମାୟୁଧସ୍ୟ କାନ୍ତାଂ, ରୁଚିରୋଜ୍ଜ୍ୱଳପୁଷ୍ପକେତୁଂ ତାଂ ସ୍ମରାମି । ୩ ।

ଅର୍ଥ—ଏବେ ମଧ୍ୟ, ହାସ୍ୟଯୁକ୍ତା, ସ୍ତନଭାରନମ୍ରା, ମୁକ୍ତାସମୂହ-ବେଷ୍ଟିତକଣ୍ଠମାଳା, ସେହି କ୍ରୀଡ଼ାସଦନଗତା, ପୁଷ୍ପାୟୁଧର ପତ୍ନୀ, ମନୋହର ଓ ଉଜ୍ଜ୍ୱଳ ପୁଷ୍ପପତାକା ତୁଲ୍ୟ, ତାକୁ ସ୍ମରଣ କରୁଛି । ୩ ।

ପୃ-୭୦—(ଅନ୍ୱୟଃ) ଅଦ୍ୟ ଅପି ସୁରତକ୍ଲମବହୁଳାୟାଃ ତସ୍ୟାଃ ପ୍ରିୟାୟାଃ, ଗୃହୀତଦୁର୍ଲଭଶୋଭିତାର୍ଥଂ ଅବ୍ୟକ୍ତନିସ୍ୱନିତ-କାତରକଥ୍ୟମାନସଙ୍କୀର୍ଣ୍ଣବର୍ଣ୍ଣରୁଚିରଂ ବଦନଂ ସ୍ମରାମି । ୪ ।

ଅର୍ଥ—ଏବେ ମଧ୍ୟ, ସୁରତ କ୍ଳାନ୍ତିଦ୍ୱାରା ବହୁଳା, ସେହି ପ୍ରିୟାର ଶତବୃତ୍ତିର ଯୋଗ୍ୟ, ଅସ୍ପଷ୍ଟଧ୍ୱନିରେ ଓ କାତରଭାବରେ କଥିତ ଅସ୍ପଷ୍ଟ ବର୍ଣ୍ଣଦ୍ୱାରା ସୁନ୍ଦର, ମୁଖକୁ ସ୍ମରଣ କରୁଛି । ୪ ।

ପୃ-୭୦—(ଅନ୍ୱୟଃ) ଅଦ୍ୟ ଅପି ସୁରତଘୂର୍ଣ୍ଣନିମୀଳିତାକ୍ଷୀଂ ସ୍ରସ୍ତାଙ୍ଗ-ଯଷ୍ଟିଗଳିତାଂଶୁକକେଶପାଶାଂ ଶୃଙ୍ଗାରବାରିରୁହକାନନ-ରାଜହଂସୀଂ ତାଂ, ଜନ୍ମାନ୍ତରେ ଅପି, ନିଧନେ ଅପି ଅନୁଚିନ୍ତୟାମି । ୫ ।

ଅର୍ଥ—ଏବେ ମଧ୍ୟ ସୁରତବଶତଃ ଘୂର୍ଣ୍ଣିତ ଓ ନିମୀଳିତ ନେତ୍ରୀ, ଶିଥିଳଅଙ୍ଗଯଷ୍ଟିରୁ ଗଳିତ ବସନା ଓ ଗଳିତକେଶପାଶା, ଶୃଙ୍ଗାର-ପଦ୍ମବନର ରାଜହଂସୀ, ତାକୁ ଅନ୍ୟ ଜନ୍ମରେ ମଧ୍ୟ, ମୃତ୍ୟୁରେ ମଧ୍ୟ, ଅନୁଚିନ୍ତନ କରୁଛି । ୫ ।

ଶ୍ଳୋ-୬° —(ଅନ୍ୱୟଃ) ଅଦ୍ୟ ଅପି, ପ୍ରଣୟିନୀଂ, ମୃଗଶାବକାକ୍ଷୀଂ, ପୀୟୂଷପୂର୍ଣ୍ଣକୁଚକୁମ୍ଭଯୁଗଂ ବହନ୍ତୀଂ, ତାଂ ଯଦି ପୁନଃ ଦିବସାବସାନେ ଅହଂ ପଶ୍ୟାମି, (ତର୍ହି) ସ୍ୱର୍ଗାପବର୍ଗନରରାଜ୍ୟସୁଖଂ ତ୍ୟଜାମି । ୬ ।

ଅର୍ଥ—ଏବେ ମଧ୍ୟ ପ୍ରଣୟିନୀ, ମୃଗଶିଶୁନେତ୍ରୀ, ଅମୃତପୂର୍ଣ୍ଣକୁଚକୁମ୍ଭଯୁଗଳକୁ ଧାରଣ କରୁଥିବା, ତାକୁ ଯଦି ପୁନଃ ସନ୍ଧ୍ୟାସମୟରେ ମୁଁ ଦେଖିବି, ତେବେ ସ୍ୱର୍ଗ ମୋକ୍ଷ ଓ ରାଜ୍ୟସୁଖକୁ ମଧ୍ୟ ତ୍ୟାଗ କରିବି । ୬ ।

ଶ୍ଳୋ-୬୧ —(ଅନ୍ୱୟଃ) ଅଦ୍ୟ ଅପି କ୍ଷିତିତଳେ ବରକାମିନୀନାଂ ସର୍ବାଙ୍ଗସୁନ୍ଦରତୟା ପ୍ରଥମୈକରେଖାଂ ସଂସାରନାଟକରସୋତ୍ତମପାନପାତ୍ରୀଂ କନ୍ଦର୍ପବାଣବିଧୁରାଂ ତାଂ କାନ୍ତାଂ ସ୍ମରାମି । ୭ ।

ଅର୍ଥ—ଏବେ ମଧ୍ୟ ଭୂପୃଷ୍ଠରେ ଉତ୍ତମ ସ୍ତ୍ରୀମାନଙ୍କମଧ୍ୟରେ ସର୍ବାଙ୍ଗ ସୁନ୍ଦର ହେବାରୁ ଅଗ୍ରଣୀ, ସଂସାର-ନାଟକରସର ଉତ୍ତମ-ପାନପାତ୍ରୀ, କନ୍ଦର୍ପବାଣବ୍ୟଥିତା ସେହି କାନ୍ତାକୁ ସ୍ମରଣ କରୁଛି । ୭ ।

ଶ୍ଳୋ-୬୨—(ଅନ୍ୱୟଃ) ଅଦ୍ୟ ଅପି ସ୍ତମ୍ଭିତବସ୍ତ୍ରଂ ଇବ ଅଙ୍ଗଲଗ୍ନାଂ, ପ୍ରୌଢ଼ପ୍ରତାପମଦନାନଳତପ୍ତଦେହାଂ ବାଲାଂ ଅନାଥଶରଣାଂ ଅନୁକମ୍ପନୀୟାଂ ପ୍ରାଣାଧିକାଂ ତାଂ, ଅହଂ କ୍ଷଣଂ ନହି ବିସ୍ମରାମି । ୮ ।

ଅର୍ଥ—ଏବେ ମଧ୍ୟ ଓଦାଲୁଗା ପରି ଅଙ୍ଗରେ ଲାଗିଥିବା, ଅତ୍ୟନ୍ତ ତାପଯୁକ୍ତ କାମାଗ୍ନି ଦ୍ୱାରା ସନ୍ତପ୍ତଶରୀରା, ବାଳା, ଅନାଥଶରଣା, ଦୟନୀୟା ପ୍ରାଣାଧିକା ତାକୁ ମୁଁ କ୍ଷଣେ ମଧ୍ୟ ବିସ୍ମରଣ କରିପାରୁ ନାହିଁ । ୮ ।

ଶ୍ଳୋ-୬୨—(ଅନ୍ୱୟଃ) ଅଦ୍ୟ ଅପି ପ୍ରଥମତଃ ବରସୁନ୍ଦରୀଣାଂ ସ୍ନେହୈକପାତ୍ରଘଟିତାବନିପାଲପୁତ୍ରୀଂ ମମ ବିୟୋଗହୁତାଶନାର୍ଚ୍ଚିଂ, ଦାହଜ୍ୱରଂ ସୋଢ଼ୁଂ ନ ଶକ୍ୟତେ, ଇତି ତାଂ ପ୍ରତିଚିନ୍ତୟାମି ।୯।

ଅର୍ଥ—ଏବେ ମଧ୍ୟ (ବିଧାତାଙ୍କ ଦ୍ୱାରା) ପ୍ରଥମ କରି ଉତ୍ତମ ସ୍ତ୍ରୀ ମଧ୍ୟରେ ଅତି ଯତ୍ନରେ ନିର୍ମିତା ରାଜପୁତ୍ରୀ, ମୋର ବିରହାଗ୍ନି ନାମକ ଦାହଜ୍ୱରକୁ, ସହିବାପାଇଁ ସମର୍ଥା ନୁହନ୍ତି, ଅତଃ ତା ପ୍ରତି ଚିନ୍ତା କରୁଅଛି ।୯।

ପୃ-୬୨—(ଅନ୍ୱୟଃ) ଅଦ୍ୟ ଅପି, ନିଦେଶାତ୍ ବିହାୟ (ମମ) ବିଷୁସୁକସ୍ୟ ବୁଦ୍ଧିଃ (ତାଂ ବିହାୟ) ଅନ୍ୟ ବିଷୟେ ନ ଚ, କିଂ ଅହଂ କରୋମି, ଅନ୍ତକାଳେ ପ୍ରତିମୂର୍ତ୍ତିଂ ଜାନନ୍ ଅପି, କାନ୍ତା ଇତି, ବଲ୍ଲଭତମା ଇତି, ମମ ଇତି, ଧୀର (ବୁଦ୍ଧି ର୍ଜାୟତେ) ।୧୦।

ଅର୍ଥ—ଏବେ ମଧ୍ୟ, ଦେବଙ୍କୁ ଛାଡ଼ି ମୋର ଅଶ୍ୱର୍ଯ୍ୟଙ୍କର ବୁଦ୍ଧି ତା' ଛଡ଼ା ଅନ୍ୟ ବିଷୟରେ ନାହିଁ, ମୁଁ କ'ଣ କରିବି, ମରଣକାଳର ପ୍ରତିମୂର୍ତ୍ତିକୁ ଜାଣିଲେ ମଧ୍ୟ, ସେ କାନ୍ତା, ସେ ବଲ୍ଲଭତମା, ସେ ମୋର, ଏହିପରି ମୋର ନିଶ୍ଚଳା ବୁଦ୍ଧି ହେଉଅଛି ।୧୦।

ପୃ-୬୩—(ଅନ୍ୱୟଃ) ଅଦ୍ୟ ଅପି ମଦୀୟଂ ଗମନଂ ଇତି, ଉଦିତଂ ଶ୍ରୁତ୍ୱା ଏବ ତ୍ରାସୁହରିଣୀଂ ଇବ ଚଞ୍ଚଳାକ୍ଷୀଂ ବାଚଃସ୍ଖଲଦ୍‌ବିଗଳଦଶ୍ରୁଜଳାକୁଳାକ୍ଷୀଂ ଗ୍ଲାନୁଶୋକବିନମ୍ରବକ୍ତ୍ରାଂ ତାଂ ସ୍ମରାମ୍ୟହଂ ।୧୧।

ଅର୍ଥ—ଏବେ ମଧ୍ୟ ମୋର (ବିଧିକୁ) ଯିବା, ଏପରି କେବଳ ଶୁଣି, ଭୟଭୀତା ହରିଣୀ ସଦୃଶ ଚପଳାକ୍ଷୀ, ସ୍ଖଳିତବଚନା ଅଶ୍ରୁଜଳାକୁଳନୟନା ଅତ୍ୟନ୍ତଶୋକବଶତଃ ବିନମ୍ରବଦନା ତାକୁ ସ୍ମରଣ କରୁଛି ।୧୧।

ପୃ-୬୪—(ଅନ୍ୱୟଃ) ଅଦ୍ୟ ଅପି କ୍ଷଣବିଯୋଗବିକ୍ଷୋପମେୟାଂ ପୁନଃ ସଙ୍ଗେ ବହୁତରଂ ଅମୃତାଭିଷେକାଂ ମନ୍ତ୍ରୀବିଧାରଣକରୀଂ ମଦନାତିରାଗାଂ ତାଂ ସୁଦତୀଂ ସ୍ମରାମି, କ୍ରୁଦ୍ଧକେଶବହରୈଃ କିଂ ।୧୨।

ଅର୍ଥ—ଏବେ ମଧ୍ୟ ମୋର କ୍ଷଣବିୟୋଗ ଯାହାପାଇଁ ବଜ୍ରସଦୃଶ, ପୁନଃ ସଙ୍ଗମ ବିଶେଷ ଭାବରେ ଅମୃତର ଅଭିଷେକ ସଦୃଶ, ମୋର ପ୍ରାଣଧାରିଣୀ ମଦନପୀଡ଼ିତା ସେହି ସୁନ୍ଦରୀକୁ ସ୍ମରଣ କରୁଛି । ବ୍ରହ୍ମା, କେଶବ, ଶିବଙ୍କ ଶରଣରେ ମୋର କଥିଂ ? ।୧୨।

ପୃ-୭୯—(ଅନ୍ୱୟଃ) ଅଦ୍ୟ ଅପି, ଯତତା ମୟା ଅପି ତତ୍ ସୁଲଳିତଂ ବଦନଂ, କଦାଚିତ୍ ତତ୍ ସଦୃଶତଃ ନ ଦୃଷ୍ଟଂ । ଇହ ଅତିବିମଲତ୍ୱମହାଗୁଣେନ ତତ୍ କାନ୍ତିନିର୍ଜିତରେଂ ଦ୍ୱିଜରାଜ-କାନ୍ତିଂ ବହନ୍ତ । ୧୩ ।

ଅର୍ଥ—ଏବେ ମଧ୍ୟ, ଚେଷ୍ଟାଯୁକ୍ତ ମୁଁ ମଧ୍ୟ ସେହି ସୁଲଳିତ ବଦନର କେବେହେଲେ ସାଦୃଶ୍ୟ ଦେଖିନାହିଁ, ଏହି ସଂସାରରେ ଅତ୍ୟନ୍ତ-ନିର୍ମଳଗୁଣଦ୍ୱାରା ସେହି କାନ୍ତିଦ୍ୱାରା ନିର୍ଜିତ ଚନ୍ଦ୍ରଶୋଭାକୁ ନାଶ କରୁଅଛି । ୧୩ ।

ପୃ ୭୬—(ଅନ୍ୱୟଃ) ଅଦ୍ୟ ଅପି ଯମଦୂତକଳ୍ପୈଃ, ଦୁର୍ବାରକ୍ଷଣକରୈଃ, ବାସଗୃହତଃ ମୟି ନୀୟମାନେ (ସତି) ମଦେନ ତସ୍ୟା ବହୁ ବିଧଂ କିଂ କିଂ ନ କୃତଂ, ବକ୍ତୁଂ ନ ପାର୍ଯ୍ୟତେ, ଇତି ମେ ମନଃ ବ୍ୟଥତେ ।୧।

ଅର୍ଥ—ଏବେ ମଧ୍ୟ ଯମଦୂତ ସଦୃଶ, ନିଷେଧରହିତ ଭୟଙ୍କର ହସ୍ତଦ୍ୱାରା, ମୁଁ ବାସଗୃହକୁ ନିଆଗଲାରୁ, ଗର୍ବରେ ସେ ବହୁପ୍ରକାର କ'ଣ କ'ଣ ନ କରିଛି, ସେହି ସବୁ ମୁଁ କହି ପାରୁନାହିଁ । ଅତଃ ମୋ ମନ ବ୍ୟଥିତ ହେଉଅଛି ।୧।

ପୃ ୭୬—(ଅନ୍ୱୟଃ) ଅଦ୍ୟ ଅପି ମମ ବକ୍ଷବକ୍ତ୍ରୟାଃ, ଲାବଣ୍ୟନିର୍ଜିତରତି-ପତି କାମଦର୍ପଂ ପୂର୍ଣ୍ଣେନ୍ଦୁସୁନ୍ଦରମୁଖଂ ଭୂୟଃ ପୁନଃ ପତି ମୁହୂଃ ଯଦି ନ ବିଲୋକ୍ୟତେ (ଅତଃ) ମେ ହୃଦୟଂ ନିଷିଦନଂ କୁନୋତି ।୨।

ଅର୍ଥ—ଏବେ ମଧ୍ଯ ମୋର ପ୍ରିୟତମାର ଶୋକରେ କାମ ଗର୍ବନାଶକାରଣୀ ଉଚ୍ଚ ମଧ୍ୟ ପରିଷ୍କୃତ ଏପରି ପୂର୍ଣ୍ଣଚନ୍ଦ୍ର ସୁନ୍ଦର ମୁଖକୁ ବାରମ୍ବାର ଯେଉଁ କାରଣରୁ ନ ଦେଖୁଛି ଅତଃ ମୋର ହୃଦୟ ଦନଗଛ ଦୁଃଖିତ ହେଉଅଛି ।୨।

ପୃ-୭୮—(ଅନ୍ବୟଃ) ଅଦ୍ୟ ଅପି ବଳେନ ମନସା ଅବଧୃତାଂ, ସୁଦତୀଂ ମମ ଜୀବିତାଶାଂ ତାଂ ସଞ୍ଚିନ୍ତୟାମି, ନାନ୍ୟୋପଭୁକ୍ତନବ-ଯୌବନଭାରସାର ସା ଏବ ଜନ୍ମାନ୍ତରେ ଅପି ମମ ଯଥା ଗତିଃ ସ୍ୟାତ୍ ।୩।

ଅର୍ଥ—ଏବେ ମଧ୍ଯ ବଳପୂର୍ବକ ମନରେ ସ୍ଥିତା, ସୁଦତୀ, ମୋର ଜୀବନର ଆଶାସ୍ୱରୂପିଣୀ ତାକୁ ଚିନ୍ତନ କରୁଛି, ଅନ୍ୟଦ୍ୱାରା ଅନୁପଭୁକ୍ତ ନବଯୌବନା, ସେହି ଅନ୍ୟ ଜନ୍ମରେ ମଧ୍ୟ ମୋର ଯେପରି ଗତି ହେବ ।୩।

ପୃ-୭୯—(ଅନ୍ବୟଃ) ଅଦ୍ୟ ଅପି ତଦ୍‌ବଦନପଙ୍କଜଗନ୍ଧଲବ୍ଧଭ୍ରାମ୍ୟ-ଦ୍ୱିରେଫଂଚୟଚୁମ୍ବିତଗଣ୍ଡଦେଶାଂ (ସ୍ମରାମି) ଲୀଳାବଧୂତ-କରପଲ୍ଲବକଙ୍କଣାନାଂ କ୍ୱାଣଃ ମଦୀୟଂ ମନଃ ସୁତରାଂ ଦୁନୋତି ।୪।

ଅର୍ଥ—ଏବେ ମଧ୍ଯ ସେହି ମୁଖ-କମଳଗନ୍ଧରେ ଲୁବ୍ଧ ହୋଇ ବୁଲୁଥିବା ଭ୍ରମରପଙ୍କ୍ତିଦ୍ୱାରା ଚୁମ୍ବିତକପୋଳା, ତାକୁ ସ୍ମରଣ କରୁଛି । କ୍ରୀଡାରେ କମ୍ପିତ ହସ୍ତସ୍ଥିତ କଙ୍କଣମାନଙ୍କର ଶବ୍ଦ ମୋର ହୃଦୟକୁ ଅତ୍ୟନ୍ତ ତାପ ଦେଉଅଛି ।୪।

ପୃ-୭୯—(ଅନ୍ବୟଃ) ଅଦ୍ୟ ଅପି ଅସ୍ୟମଧୁପାନବଶମାହୃତେନ ମୟା ସ୍ତନମଣ୍ଡଳେ ଅପି ନଖପଦଂ ଦତ୍ତଂ ସ୍ମ, ତଦ୍ଭବଃ ତଦ୍‌ଭଙ୍ଗ-ରୋମପୁଲକୈଃ ସା ସମନ୍ତାତ୍ ଜାଗର୍ତ୍ତି, ରକ୍ଷୟତି, ପ୍ରସ୍ଫୁରାତ୍ ଲେଖୟତି ।୫।

ଅର୍ଥ—ଏବେ ମଧ୍ୟ ମଦ୍ୟପାନଦ୍ୱାରା ମତ୍ତ ମୁଁ ସ୍ତନରେ ମଧ୍ୟ ନଖକ୍ଷତ କରିଥିଲି, ନଖକ୍ଷତଜନିତ ଅଧିକ ରୋମାଞ୍ଚଦ୍ୱାରା ସେ ଭଲ-ଭାବରେ ଜାଗ୍ରତ ହେଉଛି, ଆନନ୍ଦ ଦେଉଅଛି, ଯନ୍ତ୍ରସହ ସେ ଅବଲୋକନ କରୁଛି ।

ଶ୍ଳୋ—୦—(ଅନ୍ୱୟଃ) ଅଦ୍ୟ ଅପି କୋପବିମୁଖୀକୃତଗଣ୍ଡବାମା, ଉକ୍ତଂ ବଚଃ ଯଦା ଏବ ନ ପ୍ରତିବଦବାତି (ତଦା) ବକ୍ତ୍ରଂ ଚୁମ୍ବାମି, ଭୃଶଂ ରୋଦମି, ପାଦେ ପତିତଃ ଅସ୍ମି, ତବ ଦାସଃ, ପ୍ରିୟତମେ (ମାଂ) ଭଜ (ଇତି) ସଂସ୍ମରାମି ।୮।

ଅର୍ଥ—ଏବେ ମଧ୍ୟ, ରୋଷରେ ବିମୁଖ ହୋଇ ଗାଲଫିବା ଇଚ୍ଛାରେ, କଥିତ କଥାର ଯେବେ ଉତ୍ତର ନ ଦେଉଛି, ସେତେବେଳେ ମୁଁ ମୁଖକୁ ଚୁମ୍ବନ କରୁଛି, ଅତ୍ୟନ୍ତ କାନ୍ଦୁଛି, ପାଦରେ ପତିତ ହେଉଛି, ହେ ପ୍ରିୟତମେ ! ତୁମର ମୁଁ ଦାସ, ମତେ ଭଜ, ଏସବୁ ବିଷୟ ସ୍ମରଣ କରୁଛି ।୭।

ଶ୍ଳୋ—୧—(ଅନ୍ୱୟଃ) ଅଦ୍ୟ ଅପି ସଖୀଭିଃ ଅପି ସାର୍ଦ୍ଧଂ ପ୍ରିୟାୟାଃ ବାସଗୃହେ ମନଃ ଧାବତି, ଅହଂ କିଂ କରୋମି, ଇହ କାନ୍ତାଙ୍ଗସଙ୍ଗପରିହାସବିଚିତ୍ରନୃତ୍ୟକ୍ରୀଡ଼ାଭିରାମେ ମଦୀୟକାଳଃ ଯାତୁ ।।

ଅର୍ଥ—ଏବେ ମଧ୍ୟ ସଖୀଯୁକ୍ତ ପ୍ରିୟାର ବାସଗୃହ ପ୍ରତି ମୋ ମନ ଯାଉଅଛି, ମୁଁ କ'ଣ କରିବି । ସଂସାରରେ କାନ୍ତାର ଅଙ୍ଗସଙ୍ଗ ପରିହାସ ଓ ନାନାନୃତ୍ୟ କ୍ରୀଡ଼ା ଆଦରେ ମନୋହର, ମୋ ସମୟ ଯାଉ ।୭।

ଶ୍ଳୋ—୨—(ଅନ୍ୱୟଃ) ଅଦ୍ୟ ଅପି ଶାପଂଗତା କିଂ କ୍ଷଣପରୀ, ସୁରପତେଃ ଅଥ କୃଷ୍ଣଲକ୍ଷ୍ମୀଃ ନ ଖଲୁ ତାଂ ବେଦ୍ମି, କିଂ ନୁ ଧାତା ଜଗତଃ ପରିମୋହନାୟ ଚ ବା ଯୁବତିରତ୍ନଦିଦୃକ୍ଷୟା ସା କଳ୍ପିତା ।୮।

**ଅର୍ଥ**—ଏବେ ମଧ୍ୟ ସେ ଶାପପ୍ରାପ୍ତା କ'ଣ ପାର୍ବତୀ, ଇନ୍ଦ୍ରଙ୍କର କ'ଣ ପତ୍ନୀ, ଅଥବା ବିଷ୍ଣୁଙ୍କର ଲକ୍ଷ୍ମୀ, ନିଶ୍ଚୟଭାବରେ ତାକୁ ଜାଣୁ ନାହିଁ । କ'ଣ ବିଧାତା ସଂସାରର ମୋହନପାଇଁ ଅଥବା ଶ୍ରେଷ୍ଠ ଯୁବତୀ ଦେଖିବା ଇଚ୍ଛାରେ ତାକୁ ନିର୍ମାଣ କରିଅଛି ॥ ।

ପୃ-୮୨—(ଅନ୍ୱୟଃ) ଅଦ୍ୟ ଅପି ଜଗତି ଅବୁଷ୍ଟସଦୃଶୀଂ ମେ ପରିଗ୍ରହଂ ତାଂ ଚ କଶ୍ଚିତ୍ ବର୍ଣ୍ଣୟିତୁଂ ନ ଶକ୍ନୋତି, ଖଳୁ ସଦୃଶୟୋଃ ତୟୋଃ ରୂପଃ ଯେନ ଦୃଷ୍ଟଂ, ସ ଏବ ନରଃ ଯଦି ଶକ୍ତା ଭବେତ୍, ନ ଚ ଅନ୍ୟଃ ।୯।

**ଅର୍ଥ**—ଏବେ ମଧ୍ୟ ସଂସାରରେ ଭାଗ୍ୟପର ମୋର ସ୍ତ୍ରୀକୁ କୌଣସି ଲୋକ ବର୍ଣ୍ଣନା କରିବାକୁ ସମର୍ଥ ନୁହେଁ, ନିଶ୍ଚିତ ଭାବେ ସେ ଦୁହିଙ୍କର ସାଦୃଶ୍ୟ ରୂପକୁ ଯେ ଦେଖିଛି ସେହି ମନୁଷ୍ୟ ଅବା ସମର୍ଥ ହୋଇପାରେ, ଅନ୍ୟ ନୁହେଁ । ୯ ।

ପୃ-୮୩—(ଅନ୍ୱୟଃ) ଅଦ୍ୟ ଅପି ପରିହାସହେତୋଃ ଉଜ୍ଜ୍ୱଳାସ୍ୟଂ, ବିଶ୍ରାନ୍ତକର୍ଣ୍ଣଯୁଗଳଂ, ନୟନକଜ୍ଜ୍ୱଳଂ ତତ୍, ଅଭିନବ ନବୀନ-ପୟୋଧରାଭ୍ୟାଂ କ୍ଷୀଣଂ, ତବ ବପୁଃ ପଶ୍ୟେ, ଯଦି ମେ (ଚକ୍ଷୁଃ) ନ ପଶ୍ୟତି (ତର୍ହି) ମେ ନ ଦୋଷଃ । ୧୦ ।

**ଅର୍ଥ**—ଏବେ ମଧ୍ୟ ପରିହାସବଶତଃ ପ୍ରସନ୍ନମୁଖ, କର୍ଣ୍ଣଯୁଗଳ-ବ୍ୟାପୀ ସେହି ନେତ୍ର କଜ୍ଜ୍ୱଳ ଓ ଉନ୍ନତ ସ୍ତନଯୁଗଳଦ୍ୱାରା କ୍ଷୀଣ ତୁମ୍ଭର ଶରୀରକୁ ମୁଁ ଅଶ୍ରାରେ ହୃଦୟରେ ଦେଖୁଛି, ମୋର ନେତ୍ର ଯଦି ନ ଦେଖୁଛି, ତେବେ ମୋର ଦୋଷ ନୁହେଁ । ୧୦ ।

ପୃ-୮୦—(ଅନ୍ୱୟଃ) ଅଦ୍ୟ ଅପି ନିର୍ମଳଶରଚ୍ଛଶିଗୌରକାନ୍ତିଃ (ସା) ମୁନେଃ ଅପି ଚେତଃ ହରେତ୍, ଅସୃଗାସ୍ୟଂ କଥିତ, ସୁଧାମୟଂ ତତ୍ ବକ୍ତ୍ରଂ ଅହଂ ଯଦି ପ୍ରପଦ୍ୟେ (ତର୍ହି) ଅବିରତଂ ଚୁମ୍ବନ୍ ପିବାମି, ମେ ମନଃ ବ୍ୟଥତେ । ୧୧ ।

**ଅର୍ଥ**—ଏବେ ମଧ୍ୟ ନିର୍ମଳଶରତ୍କାଳୀନ ଚନ୍ଦ୍ରସଦୃଶ ଶୁଭ୍ରକାନ୍ତି ସେ ମୁନିମାନଙ୍କର ମଧ୍ୟ ଚିତ୍ତକୁ ହରଣ କରିବ, ଆମମାନଙ୍କର କଥା କେତେ । ଅମୃତପୂର୍ଣ୍ଣ ସେହି ମୁଖକୁ ମୁଁ ଯଦି ପ୍ରାପ୍ତ ହେବି, ତେବେ ନିରନ୍ତର ଚୁମ୍ବନପୂର୍ବକ ପାନ କରିବି, ମୋର ମନ ବ୍ୟଥିତ ହେଉଅଛି । ୧୧ ।

ପୃ-୮୭—(ଅନ୍ୱୟଃ) ଅଦ୍ୟ ଅପି ତତ୍କମଳରେଣୁସୁଗନ୍ଧଗନ୍ଧଂ
ମକରଧ୍ୱଜପାତକାରି ତତ୍ ପ୍ରେମବାରି, ସୁରତୈକତୀର୍ଥଂ
ଯଦି ପୁନଃ ଅହଂ ପ୍ରାପ୍ନୋମି, ତଦବାପ୍ତିହେତୋଃ ନିୟତଂ
ପ୍ରାଣାନ୍ ତ୍ୟଜାମି । ୧୨ ।

**ଅର୍ଥ**—ଏବେ ମଧ୍ୟ ପଦ୍ମରେଣୁରେ ସୁଗନ୍ଧିତ, କନ୍ଦର୍ପପାପନାଶକ ସେହି ପ୍ରେମଜଳ (ପୂର୍ଣ୍ଣ) ସୁରତର ମୁଖ୍ୟତୀର୍ଥ ତାକୁ ଯଦି ମୁଁ ପୁନଃ ପ୍ରାପ୍ତ ହେବି, ତେବେ ତାହାର ପ୍ରାପ୍ତି ନିମିତ୍ତ ନିଶ୍ଚିତଭାବରେ ପ୍ରାଣକୁ ତ୍ୟାଗ କରିବି । ୧୨ ।

ପୃ-୮୭—(ଅନ୍ୱୟଃ) ଅଦ୍ୟ ଅପି ଅହୋ ସୁନ୍ଦରଲକ୍ଷପୂର୍ଣ୍ଣେ ଅନ୍ୟୋନ୍ୟ
ଉତ୍ତମଗୁଣାଧିକସଂପ୍ରସନ୍ନେ ଜଗତି ତଦୀୟଂ ରୂପଂ
ଅନ୍ୟାଭିଃ ଉପମିତୁଂ ମୟା ଅପି ନ ଶକ୍ୟଂ; ଇତି ମେ ହୃଦୟେ
ବିତର୍କଃ । ୧୩ ।

**ଅର୍ଥ**—ଏବେ ମଧ୍ୟ, ଆଶ୍ଚର୍ଯ୍ୟର ବିଷୟ ଯେ ସୁନ୍ଦରୀମାନଙ୍କର ଲକ୍ଷଲକ୍ଷ ସଂଖ୍ୟା ପୂରିତ, ପରସ୍ପର ଉତ୍ତମ ଗୁଣରେ ଅଧିକାଧିକ ସଂସାରରେ ତାହାର ରୂପକୁ ଅନ୍ୟସହିତ ଉପମାନ ଦେବାକୁ ମୁଁ ମଧ୍ୟ ସମର୍ଥ ନୁହେଁ, ଏପରି ମୋର ହୃଦୟର ତର୍କଣା । ୧୩ ।

ପୃ-୮୮—(ଅନ୍ୱୟଃ) ଅଦ୍ୟ ଅପି ରୋମାଞ୍ଚବୀଚିବିଲସଦ୍ବିପୁଳପ୍ରଭବା
ସା, ମମ ମନସ୍ତଟିନୀ ସଦା ଅସ୍ତେ, କାଦମ୍ବକେଶରୁଚିଃ
ପ୍ରିୟବଜ୍ରହଂସୀ ଷଡ୍ବୀକ୍ଷଣଂ ମାଂ ଗାଢ଼କ୍ଲମଂ କଥୟତି । ୧୪ ।

ଅର୍ଥ—ଏବେ ମଧ୍ୟ, ରୋମାଞ୍ଚରୂପକତରଙ୍ଗଶୋଭିତ ଉତ୍ତମ-ସ୍ତନବିଶିଷ୍ଟା ସେ ମୋ ମନରତରଙ୍ଗିଣୀ ସର୍ବଦା ହୋଇଛି, ପଦ୍ମକେଶରବର୍ଣ୍ଣା ପ୍ରିୟରାଜହଂସୀ ସେ, କଟାକ୍ଷଯୁକ୍ତ ମତେ, ନିଜର ଶରୀରର କାନ୍ତିକୁ କହୁଅଛି । ୧୪ ।

ସୂ—୨୨—(ଅନ୍ୱୟଃ) ଅଦ୍ୟ ଅପି ନୃପତିଶେଖରରାଜପୁତ୍ରୀଂ ସମ୍ପୂର୍ଣ୍ଣ-ଯୌବନମଦାଳସଘୂର୍ଣ୍ଣନେତ୍ରୀଂ ତାଂ ଅହୋ ସ୍ୱର୍ଗାତ୍ ଚ୍ୟୁତାଂ ଗନ୍ଧର୍ବଯକ୍ଷସୁରକିନ୍ନରନାଗକନ୍ୟାଂ ଇବ ଚିନ୍ତୟାମି । ୬ ।

ଅର୍ଥ—ଏବେ ମଧ୍ୟ ନୃପତିଶ୍ରେଷ୍ଠର ପୁତ୍ରୀ ପୂର୍ଣ୍ଣଯୌବନମଦଦ୍ୱାରା ଘୂର୍ଣ୍ଣିତନୟନା ତାକୁ ସ୍ୱର୍ଗରୁ ଖସିଥିବା ଗନ୍ଧର୍ବ ଯକ୍ଷ, ଦେବ, କିନ୍ନର ଓ ନାଗ କନ୍ୟା ସଦୃଶ ମନେ କରୁଛି ? । ୧୫ ।

ସୂ—୨୭—(ଅନ୍ୱୟଃ) ଅଦ୍ୟ ଅପି ନିଜବପୁଃ କୃଶବେଦମଧ୍ୟାଂ ଉତ୍ତୁଙ୍ଗସଂଭୃତସୁଧାସ୍ତନକୁମ୍ଭଯୁଗ୍ମାଂ ନାନାବିଚିତ୍ରକୃତମଣ୍ଡନ ମଣ୍ଡିତାଙ୍ଗୀଂ ସୁପ୍ତୋତ୍ଥିତାଂ ତାଂ ନିଶି ଦିବା ନହି ବିସ୍ମରାମି । ୧୬ ।

ଅର୍ଥ—ଏବେ ମଧ୍ୟ ନିଜର ଶରୀର ସଦୃଶ କୃଶବେଦମଧ୍ୟା, ଅମୃତପୂର୍ଣ୍ଣସ୍ତନକୁମ୍ଭଯୁଗଳା, ନାନାପ୍ରକାର ମଣ୍ଡନଦ୍ୱାରା ଭୂଷିତାଙ୍ଗୀ ଶୟନରୁ ଉଠିଥିବା ତାକୁ ରାତି ଓ ଦିନ ଭୁଲି ପାରୁନାହିଁ । ୧୬ ।

ସୂ—୨୮—(ଅନ୍ୱୟଃ) ଅଦ୍ୟ ଅପି କନକକାନ୍ତିମଦାଳସାଙ୍ଗୀଂ, ବ୍ରୀଡୋତ୍ସୁକାଂ, ନିପତିତାଂ ଇବ ଚେଷ୍ଟମାନାଂ,ଅଙ୍ଗାଙ୍ଗସଙ୍ଗ-ପରିଚୁମ୍ବନଜାତମୋହାଂ, ଜୀବନୌଷଧୀଂ ଇବ ତାଂ ପ୍ରମଦାଂ ସ୍ମରାମି । ୧୭ ।

ଅର୍ଥ—ଏବେ ମଧ୍ୟ ସୁବର୍ଣ୍ଣକାନ୍ତି ଗର୍ବରେ ଅଳସଯୁକ୍ତଶରୀରା, ଲଜ୍ଜା ଓ ଉତ୍କଣ୍ଠାଯୁକ୍ତା, ପଡ଼ିଗଲା ପରି ଚେଷ୍ଟା କରୁଥିବା, ଆଲିଙ୍ଗନ ଓ ଚୁମ୍ବନଦ୍ୱାରା ମୋହପ୍ରାପ୍ତା, ଜୀବନର ଔଷଧ ସଦୃଶ, ସେହି ପ୍ରମଦାକୁ ସ୍ମରଣ କରୁଛି । ୧୭ ।

ପୃ-୮୯—(ଅନ୍ୱୟଃ) ଅଦ୍ୟ ଅପି ସୁରତକେଳିନିରସ୍ତସୁଖଂ ବନ୍ଧୋପବନ୍ଧ-
ପତନୋତ୍ଥିତଶୂନ୍ୟହସ୍ତଂ ଦନ୍ତୌଷ୍ଠପୀଡ଼ନନଖକ୍ଷତ-
ରକ୍ତସିକ୍ତଂ ତସ୍ୟାଃ ତତ୍ ରତିବନ୍ଧ ଚରିତ୍ରଂ
ସ୍ମରାମି । ୧୮ ।

ଅର୍ଥ—ଏବେ ମଧ୍ୟ ତାହାର ସେହି ସୁରତକ୍ରୀଡ଼ାର ଅସ୍ପୃହତ
ସୁଖକୁ, ବନ୍ଧ ଓ ଉପବନ୍ଧରେ ପଡ଼ି ଉଠୁଥିବା ଶୂନ୍ୟହସ୍ତକୁ, ଦନ୍ତକ୍ଷତ ଓ
ନଖକ୍ଷତ ଜନିତ ରକ୍ତରଞ୍ଜନକୁ ଓ ସୁରତ ସମୟର ଚରିତ୍ରକୁ
ସ୍ମରଣ କରୁଛି । ୧୮ ।

ପୃ-୮୯— ଅନ୍ୱୟଃ) ଅଦ୍ୟ ଅପି ବିପୁଲଲୋଲବିଶାଲନେତ୍ରାଂ,
ଶୀତାଂଶୁମଣ୍ଡଳମୁଖୀଂ, କୁଟିଳାଳକାନ୍ତାଂ, ମତ୍ତେଭକୁମ୍ଭସଦୃଶ-
ସ୍ତନଭାରନମ୍ରାଂ, ବନ୍ଧୂକପୁଷ୍ପସଦୃଶୌଷ୍ଠପୁଟୀଂ,ତାଂ ସ୍ମରାମି ।୧୯।

ଅର୍ଥ—ଏବେ ମଧ୍ୟ ଅଧିକ ଚପଳ ଓ ବିଶାଳନେତ୍ରୀ, ଚନ୍ଦ୍ରମୁଖୀ,
କୁଞ୍ଚିତଚୂର୍ଣ୍ଣକୁନ୍ତଳା, ମତ୍ତଗଜକୁମ୍ଭସଦୃଶସ୍ତନଭାରରେ ନମ୍ରା, ବନ୍ଧୂକ
ପୁଷ୍ପତୁଲ୍ୟ ଓଷ୍ଠପୁଟୀ ତାକୁ ସ୍ମରଣ କରୁଛି । ୧୯ ।

ପୃ ୯୦—(ଅନ୍ୱୟଃ) ଅଦ୍ୟ ଅପି ଅହଂ ବରବଧୂସୁରତୋପଭୋଗଂ
ଅନ୍ତରେଣ, ଅନ୍ୟବିଧିନା କ୍ଷଣଂ ନ ଜୀବାମି, ତତ୍ ଭ୍ରାତରଃ
ଦୁଃଖଶାନ୍ତ୍ୟୈ ମରଣଂ ଏବ, ହି ବିଜ୍ଞପୟାମି ଭବତଃ ତ୍ୱରିତଂ
ଲୁନୀଧ୍ୱମ୍ । ୨୦ ।

ଅର୍ଥ—ଏବେ ମଧ୍ୟ ମୁଁ ଉତ୍ତମବଧୂରସୁରତୋପଭୋଗ ବିନା,
ଅନ୍ୟ ପ୍ରକାରରେ କ୍ଷଣକାଳମଧ୍ୟ ଜୀବିତ ରହି ପାରିବି ନାହିଁ,
ସେହି କାରଣରୁ ହେ ଭାଇମାନେ ! ଦୁଃଖୋପଶମନପାଇଁ ମୋର ମରଣ
(ହେଉଛି ଶ୍ରେଷ୍ଠ) ଅତଃ ମୁଁ ଜଣାଉଛି ଅପଣମାନେ ଶୀଘ୍ର ମୋତେ
ଛେଦନକର । ୨୦ ।

ପୃ ୧୦—(ଅନ୍ୱୟଃ) ଅଦ୍ୟ ଅପି ହରଃ କାଳକୂଟଂ କିଲ ନ ଉଦ୍ଗିରତି, କୂର୍ମଃ ଖଲୁ ପୃଷ୍ଠଭାଗେ ଧରଣୀଂ ବହତି, ଅମ୍ଭୋନିଧିଃ ଦୁଃସହବାଡ଼ବାଗ୍ନିଂ ବହତି । ସୁକୃତିନଃ ଅଙ୍ଗୀକୃତଂ ପରିପାଳୟନ୍ତି । ୨୧ ।

ଅର୍ଥ—ଏବେ ମଧ୍ୟ ଶିବ କାଳକୂଟକୁ ଛାଡ଼ି ନାହାନ୍ତି; କୂର୍ମ ମଧ୍ୟ ପୃଷ୍ଠରେ ପୃଥିବୀକୁ ଧାରଣ କରୁଛି, ସମୁଦ୍ର ଅସହ୍ୟ ବାଡ଼ବାଗ୍ନିକୁ ଧାରଣ କରୁଛି ! ଉତ୍ତମ ଜନ ସ୍ୱୀକୃତକୁ ଉତ୍ତମଭାବେ ପାଳନ କରନ୍ତି । ୨୧ ।

---

# ପରିଶିଷ୍ଟ

| ପୃଷ୍ଠା | ପଦ | ମ୍ୟୁଜିଅମ୍ ପୋଥି | ବିଶ୍ୱବିଦ୍ୟାଳୟ ପୋଥି |
|---|---|---|---|
| ୧ | ୪ | ନାଦଇ | ନାଦତ |
| ୨ | ୬ | ବେତ୍ତିକ | କତ୍ତିକ |
| ୨ | ୬ | ସେ ମଧୁପ | ସମଧୁପ |
| ୨ | ୩ | ରଙ୍ଗି | ରଞ୍ଜି |
| ୨ | ୧୫ | ସଙ୍ଗତ | ସନ୍ତତ |
| ୩ | ୧୮ | କର | କରେ |
| ୩ | ୨୪ | ଅଥୟ | ସଦୟ |
| ୩ | ୨୬ | ବାଳୀ (ଗଣ ?) | ନୃତ୍ୟବାଳୀ |
| ୪ | ୩୪ | ଧୃତାରୀ | ଧୃତାସି |
| ୫ | ୪୪ | ଲୁବ୍ଧତ | ଲୁବ୍ଧତ |
| ୬ | ୭ | ନାନା | ନାମ |
| ୬ | ୮ | ଅବଣ | ହରଷ |
| ୮ | ୧୫ | ନିଷ୍ଠୟ | ନିଷ୍ଠେୟ |
| ୮ | ୧୫ | ତନ୍ମୟ | ସଦୟେ |
| ୧୨ | ୩ | ସିଅଣ | ଶିଷ୍ୟଗଣ |
| ୧୩ | ୯ | ବର କରନ୍ତ ଗାନ | ନିକର କରେ ସ୍ୱନ |
| ୧୪ | ୧୨ | ମନ୍ଦକ ମଧୁର | ମନ୍ଦ ମଧୁସ୍ୱର |
| ୧୪ | ୧୬ | ସୁଖରେ ରମରେ ରମଣୀ | ଶୁଣରେ ରମଣୀର ମଣି |
| ୧୭ | ୨ | ଦେଶରେ | ପୁରରେ |
| ୧୭ | ୩ | କାଙ୍କସି | କାଙ୍କର |
| ୧୭ | ୫ | ଲଭ ମନେ ଦୁଃଖ | କଲ ମନ ଦୁଃଖ |
| ୧୮ | ୯ | ଲଭଲ୍ଲ | ଚନ୍ଦ୍ରଲ |
| ୧୮ | ୧୯ | ସଖୀ ଅଗେ | ସଖୀଗଣେ |
| ୧୯ | ୧୭ | ଦାନ୍ଧ | ଦନ୍ଧ |

| ପୃଷ୍ଠା | ପଦ | ମ୍ୟୁଜିଅମ୍ ପୋଥି | ବିଶ୍ୱବିଦ୍ୟାଳୟ ପୋଥି |
|---|---|---|---|
| ୧୯ | ୧୭ | ଲଭନ୍ତ | ଦହନ୍ତ |
| ୨୦ | ୨୩ | ବୋଲଣ ହୃଦରେ ଦର | ବୋଲି ବେନି ଦର ଶିରେ |
| ୨୧ | ୨୭ | ଦନ ମୋର ନ ସରଇ | ମୋର ଅଟନ ନ ରସଇ |
| ୨୧ | ୨୯ | ଅକ୍ଷର | କାତର |
| ୨୨ | ୩୧ | ଗଣ୍ଡେ | କଣ୍ଠେ |
| ୨୨ | ୩୨ | ନବ | ନୀଳ |
| ୨୨ | ୨ | ନ ହୋଇନ୍ତ କଣ୍ଠ | ଲୁହଇ ତା କଣ୍ଠ |
| ୨୩ | ୬ | ହୋଇବ | ଲଭିବ |
| ୨୪ | ୨୭ | ବନ୍ଧନ୍ତ | ଭେଦନ୍ତ |
| ୨୫ | ୩୫ | ପ୍ରିୟ | ଶୀଘ୍ର |
| ୨୬ | ୩୬ | ଏ କଥା କରବେ | ଏ କଷ୍ଟ ହରବେ |
| ୨୯ | ୬ | ଇଚ୍ଛାରେ | ଭ୍ରମରେ |
| ୩୦ | ୧୦ | ଭାବଇ | ଭଜଇ |
| ୩୨ | ୧୪ | ବପୋପଦ୍ଧା | ବଷ୍ଟାପଦ୍ଧା |
| ୩୨ | ୧୪ | ନାହିଁ ତା | ନାହିଁ ନା |
| ୩୨ | ୧୫ | ଜ୍ଞାତବ୍ୟମେବ<br>ଯଦ ମେ ତୁ ପିତା | ଜାନାଛି ତାତୋ<br>ଯଦ ମେଽଦ୍ୟ ମୁଗ୍ଧ |
| ୩୨ | ୧୫ | ସାନ୍ଧା | ସନ୍ଧା |
| ୩୩ | ୧୭ | ମାଣୁ | ମଦ୍ୟ |
| ୩୩ | ୧୭ | ଏବ | ଏଷଃ |
| ୩୪ | ୧୮ | ସପୂର୍ଣ୍ଣତେ | ସପୂର୍ଣ୍ଣତେ |
| ୩୪ | ୧୮ | ସମନ୍ୱିତେନାପି<br>ସ୍ଫୁଟଧାପମେନ | ରସାନ୍ୱିତସ୍ତ୍ରାଦୁ<br>ସ୍ଫୁଟଭୀଜଟନନ |
| ୩୪ | ୧୮ | ବରଭୋଜନ ଏ<br>ସଂସାରେ ସାର | ସ୍ୱାଦୁବର ଭୋଜନ ଏ<br>ସଂସାର |

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| । | ୧ | ନିବଦ୍ଧଃ | ନିବଦ୍ଧାଃ |
| ୩ | ୨୩ | କଳାବନ୍ତୀ | କଳାବନ୍ତ |
| ୪ | ୧୨ | ସାରଙ୍ଗ | ସାରଙ୍ଗୀ |
| ୬ | ୧୫ | କଳାବଣ୍ଟ | କଳାବନ୍ତ |
| ୧୫ | ଶେଷ | ନ କଲ୍ପ | କଳ୍ପ |
| ୨୮ | ୩ | ସେବାର୍ପିତେ | ସେବାଃପିତେ |
| ୩୦ | ୧୫ | ଷ୍ଟୃତା | ତୃ |
| ୩୦ | ୧୬ | ତେଚ୍ଛେତ୍ | ନେଚ୍ଛେତ୍ |
| ୩୨ | ୨୩ | ଶୁଣିବ | ଶୁଣିବେ |
| ୩୩ | ୪ | ଶିରଂସ | ଶିରାଂସି |
| ୩୩ | ୧୪ | କୁରୁଷ | କୁରୁଷ୍ୱ |
| ୩୪ | ୧୪ | ଫରସ୍ୱ | ପୂରସ୍ୱ |
| ୩୫ | ୬ | କାଳନ୍ଦୀ | କାଳିନ୍ଦୀ |
| ୩୫ | ୧୦ | ସଂସଚତୋ | ସଂସୃଚତୋ |
| ୩୫ | ଶେଷ | ୨୨ | ୨୧ |
| ୩୬ | ଶେଷ | (୩) | (୨) |
| ୩୬ | ୯ | ରମ୍ୟାଂ | ରମ୍ୟେ |
| ୩୮ | ୧୬ | ଶୁଣ | ପ୍ରାଣୁ |
| ୪୨ | ୧ | ଗଛ | ଗଚ୍ଛ |

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୪୩ | ୧୩ | ସମୁଦ୍ଧତାଃ | ସମୁଦ୍ଧତା |
| ୪୪ | ୧୮ | ଶ୍ଳକ୍ଷ୍ଣ | ଶ୍ଳକ୍ଷ୍ଣ୍ |
| ୪୫ | ୬ | ଭର | ଜ୍ୱର |
| ୪୬ | ଶେଷ | ଚୂର୍ଣ୍ଣୈ | ଚୂର୍ଣ୍ଣୈଃ |
| ୪୭ | ୫ | ଶୃଙ୍ଗାର | ଶୃଙ୍ଗାର |
| ୪୮ | ୧୦ | ଜିଁତ | ଜିଁତଂ |
| ୫୩ | ୩ | ମମ | ମ |
| ୫୩ | ୨୦ | ହୋଇବସବାମା | ହୋଇବା ସ୍ୱକାମା |
| ୫୭ | ୪ | ମିଶି | ଖସି |
| ୫୯ | ପାଦଟୀକା | (୩) (ଖ) | (୩) (ଗ) |
| ୬୦ | ଶେଷ | ବହ୍ନେଳ | ବହ୍ଲେଳ |
| ୬୩ | ୭ | ମର୍ମେ | ଶ୍ରମେ |
| ୬୩ | ୧୮ | କରେ | କର୍ଣ୍ଣେ |
| ୬୪ | ୮ | ଚୂଚୁକା | ଚୂଚୁକା |
| ୬୭ | ୨ | ଷ୍ଟ୍ରୀମ୍ | ଷ୍ଟ୍ରୀମ୍ |
| ୬୭ | ୪ | ଦୃଶ୍ୟାଂ ସୁଗମି ।୨୭। | ଦୃଶାଂ ସୁଗମି ।୧୭। |
| ୬୮ | ୧୬ | ଅଙ୍ଗ | ଅଙ୍ଗେ |
| ୭୧ | ୨ | ଶୁଣ | ଶୁଣ |
| ୭୨ | ୭ | ଯେହେଁ | ଯେହ୍ନେ |
| ୭୪ | ୧୨ | କଂ | କଂ |

| ପୃଷ୍ଠା | ଧାଡ଼ି | ଅଶୁଦ୍ଧ | ହେବ |
|---|---|---|---|
| ୭୪ | ଶେଷ | ସଦ୍ଗୁଣଣେ | ସଦ୍ଗୁଣଗୋ |
| ୭୫ | ୧ | ଚରଂ | ଚଚରଂ |
| ୭୮ | ୧୧ | ସ୍ବଚୈ | — |
| ୭୮ | ୧୮ | ମରଇ | ସରଇ |
| ୮୦ | ୧୨ | ବକ୍ତ୍ର | ବକ୍ତ୍ରଂ |
| ୮୬ | ୭ | ସଦ୍ | ଛ |
| ୮୬ | ୧୬ | ବର | କର |
| ୯୧ | ୩ | ବାନ୍ଧାସ୍ତ | ବାନ୍ଧାର |